ସଂପ୍ରତି ଦେଶରେ ଦେଖାଦେଇଥିବା ଫାସିବାଦୀ ଆକ୍ରମଣ ପରିପେକ୍ଷୀରେ, ଏହାକୁ ପ୍ରତିହତ କରିବା ସହ ଏକ ନୂତନ ସମାଜ ପାଇଁ ଲଢେଇର ଲକ୍ଷ୍ୟ ନେଇ ବିଭିନ୍ନ ଗଣସଂଗଠନ, ଜନଆନ୍ଦୋଳନ ଏବଂ ପ୍ରଗତିଶୀଳ ଓ ଗଣତାନ୍ତ୍ରିକ ବ୍ୟକ୍ତିବିଶେଷଙ୍କର ଏକ ମିଳିତ ଉଦ୍ୟମ ହେଉଛି 'ଜନ ଅଧିକାର ମଞ୍ଚ, ଓଡିଶା' । ଅର୍ଥନୈତିକ ଭାବେ କର୍ପୋରେଟ ସପକ୍ଷବାଦୀ ଓ ଜନବିରୋଧୀ ନବ୍ୟ-ଉଦାରବାଦ; ରାଜନୈତିକ ଭାବେ ଅଗଣତାନ୍ତ୍ରିକ, କ୍ଷମତାରେ କେନ୍ଦ୍ରିକରଣ, ତୀବ୍ର ବ୍ୟକ୍ତି-ସ୍ୱାଧୀନତାର ବିରୋଧ, ଆଧିପତ୍ୟବାଦ ଓ ସାମରିକିକରଣ ଏବଂ ସାମାଜିକ ଭାବେ ଜାତିବାଦ, ସାଂପ୍ରଦାୟୀକତା, ପୁରୁଷତାନ୍ତ୍ରୀକ ଓ ସମସ୍ତ ପ୍ରକାରର ସାମାଜିକ କୂପମଣ୍ଡୁକ ଓ ପଛୁଆପଣ ହେଉଛି ଆଜିର ଭାରତୀୟ ଫାସିବାଦର ବିଶେଷ ତିନୋଟି ଉପାଦାନ । ଏହା ବିରୁଦ୍ଧରେ କେବଳ ବ୍ୟାପକ ଜନଗଣ ଐକ୍ୟବଦ୍ଧ ହେଉନାହାନ୍ତି, ଏହି ସଂଘର୍ଷ ମଧ୍ୟ ଦେଇ ଏକ ବିକଳ୍ପ ଜନବାଦୀ ନୀତିସମୂହ ମଧ୍ୟ ରୂପ ନେବାରେ ଲାଗିଛି । ଓଡିଶାରେ ଏହି ଲଢେଇକୁ ଆଗକୁ ନେବା ଏବଂ ଏହା ମଧ୍ୟ ଦେଇ ଏକ ବିକଳ୍ପ ଜନବାଦୀ ଧାରା ସୃଷ୍ଟି କରିବା ଏହି ମଞ୍ଚର ଲକ୍ଷ୍ୟ ।

---

ସହଯୋଗ ରାଶି : ୨୦/- ଟଙ୍କା

ଜନ ଅଧିକାର ମଞ୍ଚ, ୨୧୨୨, ଶବର ସାହି ଲେନ୍, ଭୁବନେଶ୍ୱର-୦୬
ତରଫରୁ ବିଶ୍ୱପ୍ରିୟ କାନୁନ୍‌ଗୋଙ୍କ ଦ୍ୱାରା ପ୍ରକାଶିତ ।

# କୃଷି ଆଇନକୁ ବିରୋଧ କାହିଁକି



ଜନ ଅଧିକାର ମଞ୍ଚ, ଓଡ଼ିଶା

# କୃଷି ଆଇନକୁ ବିରୋଧ କାହିଁକି

ପ୍ରଥମ ସଂସ୍କରଣ : ଜାନୁଆରୀ ୨୦୨୧

ପ୍ରକାଶକ :
**ଜନ ଅଧିକାର ମଞ୍ଚ**
୨୧୨୨, ଶବର ସାହି ଲେନ୍, ଭୁବନେଶ୍ୱର - ୬
**ଯୋଗାଯୋଗ ନଂ :** ୯୮୬୧୩୯୨୦୨୧

ମୁଦ୍ରଣ : ଇଂପ୍ରେସନ୍ ପ୍ରେସ୍
ଅଶୋକ ନଗର, ଭୁବନେଶ୍ୱର

ପ୍ରଚ୍ଛଦ ଚିତ୍ର : ଚିତ୍ତପ୍ରସାଦ

ମୂଲ୍ୟ - ୨୦ ଟଙ୍କା ମାତ୍ର

# ଏକ ଐତିହାସିକ କୃଷକ ଆନ୍ଦୋଳନ

ରାଜଧାନୀ ଦିଲ୍ଲୀର ସୀମା, ଏବେ ଦେଶର କୃଷକ ଆନ୍ଦୋଳନର ଦୁର୍ବାର ଘାଟୀରେ ପରିଣତ ହୋଇଯାଇଛି। ଦିଲ୍ଲୀକୁ ସଂଯୋଗ କରୁଥିବା ସମସ୍ତ ରାଜପଥକୁ ଗତ ଚାରି ସପ୍ତାହରୁ ଅଧିକ ସମୟ ଧରି ଅବରୋଧ କରି ପଞ୍ଜାବ, ହରିଆନା, ୟୁପି ଓ ରାଜସ୍ଥାନ ସମେତ ଦେଶର ବିଭିନ୍ନ ରାଜ୍ୟରୁ ଆସିଥିବା ଲକ୍ଷ ଲକ୍ଷ କୃଷକ ରାଜଧାନୀ ଓ କହିବାକୁ ଗଲେ ମୋଦି ସରକାରକୁ ଏକରକମ ଘେରି କରି ରହିଛନ୍ତି। ସେମାନେ ରାଜନୈତିକ ଦଳମାନଙ୍କ ପ୍ରତୀକାତ୍ମକ କାର୍ଯ୍ୟକ୍ରମ ପରି କୌଣସି ତଥାକଥିତ ପ୍ରତିବାଦ ବା ଧାରଣାର ଦିନିକିଆ ଔପଚାରିକତା ପୂରଣ କରିବାକୁ ଆସିନାହାନ୍ତି। ବରଂ ନିଜ ନିଜର ଟ୍ରାକ୍ଟରର ଟ୍ରଲିକୁ ଏକ ତମ୍ବୁରେ ପରିଣତ କରିଦେଇ ସେଥିରେ ଆଗାମୀ ଛଅ ମାସର ରାସନ ସହିତ ସରକାରଙ୍କ ତିନି କୃଷି ଆଇନ ବିରୁଦ୍ଧରେ ଏକ ଲମ୍ୱା ଲଢ଼େଇ ପାଇଁ ପ୍ରସ୍ତୁତି ହୋଇ ଆସିଛନ୍ତି। ଦେଶର ପାଞ୍ଚ ଶହରୁ ଊର୍ଦ୍ଧ କୃଷକ ସଙ୍ଗଠନଙ୍କୁ ନେଇ ଗଠିତ ସଂଯୁକ୍ତ କିଶାନ୍ ମୋର୍ଚ୍ଚା ଏହି ଐତିହାସିକ ଲଢ଼େଇର ନେତୃତ୍ୱ ନେଉଛି। କୃଷି ସମସ୍ୟା ଉପରେ ଆନ୍ଦୋଳନ ପାଇଁ ଏତେ ସଂଖ୍ୟକ କୃଷକ ସଂଗଠନ ଆଗକୁ ଆସି ଯେଉଁଭଳି ଏକତା ଓ ପ୍ରତିବଦ୍ଧତାର ପ୍ରଦର୍ଶନ କରିଛନ୍ତି ତାହା ସ୍ୱାଧୀନ ଭାରତର ଇତିହାସରେ ଅଭୂତପୂର୍ବ ମନେହୁଏ। ଦେଶୀ ବିଦେଶୀ ବଡ଼ କର୍ପୋରେଟ୍‌ମାନେ ସ୍ୱାଧୀନତା ଆନ୍ଦୋଳନ ସମୟର କୃଷକ ଆନ୍ଦୋଳନ ପରି ଚଳିତ କୃଷକ ଆନ୍ଦୋଳନର ସିଧାସଳଖ ନିଶାନାରେ ଥିବା ବେଳେ ମୋଦି ନେତୃତ୍ୱାଧୀନ ବିଜେପି-ଆର୍‌ଏସ୍‌ଏସ୍‌ର ସରକାର ସେମାନଙ୍କ ଦଲାଲ ଭୂମିକାରେ ଠିଆ ହୋଇଛି।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା, କୃଷକମାନେ ଏହି ଲଢ଼େଇରେ ଆଦୌ ଏକା ନୁହଁନ୍ତି। ଏହି ଆନ୍ଦୋଳନ ପ୍ରତି ସମାଜର ବିଭିନ୍ନ ମହଲରୁ ଯେଉଁଭଳି ସମର୍ଥନ ଏବଂ ସହାନୁଭୂତି ମିଳୁଛି ତାହା ସରକାର ସମେତ ସମସ୍ତଙ୍କୁ ଏକଦମ୍ ଚକିତ କରି ଦେଇଛି। ଆନ୍ଦୋଳନରତ ଚାଷୀଙ୍କ ପାଇଁ ଦିଲ୍ଲୀ ଓ ହରିଆନାରେ ଥିବା ଗୁରୁଦ୍ୱାରମାନେ ଲଙ୍ଗର ଜରିଆରେ ମାଗଣାରେ ଖାଇବା ପିଇବାର ବ୍ୟବସ୍ଥା

କରିଥିବା ବେଳେ ବିଭିନ୍ନ ବ୍ୟକ୍ତି ବିଶେଷ ଓ ସଂସ୍ଥାମାନଙ୍କ ପକ୍ଷରୁ ସ୍ୱେଚ୍ଛାକୃତ ଭାବେ ବିଭିନ୍ନ ଆବଶ୍ୟକୀୟ ସାମଗ୍ରୀର ଯୋଗାଣ ଅବ୍ୟାହତ ରହିଛି । ପଞ୍ଜାବ, ହରିଆନା, ରାଜସ୍ଥାନ, ଉତ୍ତରାଖଣ୍ଡ ଓ ଉତ୍ତର ପ୍ରଦେଶର ବିଭିନ୍ନ ଗାଁ ଓ ସହରରୁ ସମାଜର ବିଭିନ୍ନ କ୍ଷେତ୍ରର ଲୋକେ ସ୍ୱେଚ୍ଛାକୃତ ଭାବେ ଅର୍ଥ ଓ ସାମଗ୍ରୀ ଯୋଗାଇବା ଦେଖିବାକୁ ମିଳିଛି । ପଞ୍ଜାବରେ ତ ଏହି ଆନ୍ଦୋଳନ ଏକ ରକମ ଜନ ଆନ୍ଦୋଳନରେ ପରିଣତ ହୋଇଯାଇଛି । ସେଠାକାର ସମାଜର ସବୁ ବର୍ଗର ଲୋକେ ପ୍ରତ୍ୟେକ୍ଷ କିମ୍ବା ପରୋକ୍ଷ ଭାବେ ଚାଷୀ ଆନ୍ଦେଳନକୁ ସମର୍ଥନ ଜଣାଇଛନ୍ତି । ସେଠାକାର ପ୍ରତିଟି ଚାଷୀ ପରିବାରରୁ ଜଣେ ଦୁଇ ଜଣ ଆନ୍ଦୋଳନରେ ସାମିଲ ହେବା ପାଇଁ ଦିଲ୍ଲୀ ଆସିଥିବା ବେଳେ ଅନ୍ୟମାନେ ଘରେ ରହି ଚାଷବାସ ଓ ଅନ୍ୟାନ୍ୟ କାର୍ଯ୍ୟକୁ ସମ୍ଭାଳିବା ଦେଖିବାକୁ ମିଳୁଛି । ଏପରିକି ଆନ୍ଦୋଳନକୁ ଯାଇଥିବା ଲୋକଙ୍କ ପରିବାରର ସୁବିଧା ଅସୁବିଧା ଏବଂ ଚାଷ କାର୍ଯ୍ୟରେ ସହଯୋଗ କରିବାକୁ ପଞ୍ଜାବର ଗାଁ ଗାଁରେ ଲୋକେ ମିଳିମିଶି ସହଯୋଗ କରି ଭାଇଚାରର ଏକ ଶକ୍ତିଶାଳୀ ଉଦାହରଣ ସୃଷ୍ଟି କରିଛନ୍ତି ।

କେବଳ ସେତିକି ନୁହେଁ, ଆନ୍ଦୋଳନର ସମର୍ଥନରେ ପଞ୍ଜାବ ଓ ହରିଆନାର କବି, ଲେଖକ, କଳାକାର, ବୈଜ୍ଞାନିକ, କ୍ରୀଡ଼ାବିତ୍ ବି ଖୋଲାଖୋଲି ଭାବେ ସାମନାକୁ ଆସିଛନ୍ତି । କୃଷକ ଆନ୍ଦୋଳନକୁ ସମର୍ଥନ କରି ସେଠାକାର ଅନେକ ଜାତୀୟ ଓ ଆର୍ନ୍ତଜାତୀୟ ଖେଳାଳି ନିଜର କ୍ରୀଡ଼ା ମେଡ଼ାଲକୁ ସରକାରଙ୍କୁ ଫେରାଇ ଦେଇଥିବା ବେଳେ ଅନେକ କବି, ଲେଖକ, କଳାକାର ବି ନିଜର ପୁରସ୍କାର ଫେରାଇଛନ୍ତି । ଅନେକ ବୈଜ୍ଞାନିକ ଓ ଶିକ୍ଷାବିତ ବି କୃଷି ଆଇନ ବିରୁଦ୍ଧରେ ଖୋଲାଖୋଲି ସ୍ୱର ଉଠାଇଥିବା ବେଳେ ଦେଶର ଜଣାଶୁଣା ଅର୍ଥନୀତିଜ୍ଞମାନେ କଳା କୃଷି ଆଇନଗୁଡ଼ିକୁ ପ୍ରତ୍ୟାହାର କରିବାକୁ ସରକାରଙ୍କ ନିକଟରେ ଦାବି କରିଛନ୍ତି । ପଞ୍ଜାବର ଅନେକ ପୂର୍ବତନ ସେନା ଅଧିକାରୀ ବି ଇତି ମଧ୍ୟରେ କୃଷି ଆଇନର ପ୍ରତିବାଦରେ ନିଜର ମେଡ଼ାଲ ଫେରାଇବାକୁ ଘୋଷଣା କରିଛନ୍ତି । ଦିଲ୍ଲୀର କୃଷକ ଆନ୍ଦୋଳନକୁ ପଞ୍ଜାବ, ହରିଆନାର ବ୍ୟବସାୟୀ ସଂଘମାନଙ୍କ ଠାରୁ ଆରମ୍ଭ କରି ଶିକ୍ଷକ, ସରକାରୀ କର୍ମଚାରୀଙ୍କ ପର୍ଯ୍ୟନ୍ତ ସମାଜର

ସବୁ ବର୍ଗର ଦୃଢ଼ ସମର୍ଥନ ଏହାକୁ ଏକ ପ୍ରକୃତ ଜନ ଆନ୍ଦୋଳନରେ ପରିଣତ କରି ଦେଇଛି ।

ତେବେ କେବଳ ପଞ୍ଜାବ କିମ୍ବା ଭାରତରେ ନୁହେଁ ଆର୍ନ୍ତଜାତୀୟ ସ୍ତରରେ ବି ଏହି ଆନ୍ଦୋଳନ ପ୍ରତି ବ୍ୟାପକ ସମର୍ଥନ ମିଳିଛି । ବିଶ୍ୱର ଶତାଧିକ ଦେଶରେ ରହୁଥିବା ପ୍ରବାସୀ ଭାରତୀୟମାନେ କୃଷକଙ୍କ ସମର୍ଥନରେ ସବୁ ଦେଶରେ ରାସ୍ତାକୁ ଆସିବା ଦେଖାଯାଇଛି । ଗତ ଏକ ମାସ ମଧ୍ୟରେ ଶହେରୁ ଊର୍ଦ୍ଧ୍ୱ ଦେଶରେ କୃଷକ ଆନ୍ଦୋଳନ ସପକ୍ଷରେ ବାରମ୍ବାର ସଭା, ବିକ୍ଷୋଭ ଓ ପ୍ରଦର୍ଶନ ସଂଗଠିତ ହୋଇଛି । ଭାରତର କୃଷକ ଆନ୍ଦୋଳନ ପ୍ରତି ନିଜ ଦେଶରେ ବର୍ଦ୍ଧିତ ସମର୍ଥନକୁ ଦେଖି କାନାଡ଼ାର ପ୍ରଧାନମନ୍ତ୍ରୀ ଦୁଇ ଦୁଇ ଥର ଟ୍ୱିଟ୍ କରି ଆନ୍ଦୋଳନକୁ ସମର୍ଥନ ଜଣାଇଥିବା ବେଳେ ବ୍ରିଟିଶ ପାର୍ଲ୍ୟାମେଣ୍ଟର ଅନେକ ସାଂସଦ ଖୋଲାଖୋଲି ଭାବେ ନିଜର ସମର୍ଥନ ଜ୍ଞାପନ କରିଛନ୍ତି ।

## କୃଷକମାନଙ୍କ ଆନ୍ଦୋଳନ ଆଜିର ନୁହେଁ

ଦେଶବାସୀଙ୍କୁ ବିଭ୍ରାନ୍ତ କରିବାକୁ ପ୍ରଧାନମନ୍ତ୍ରୀଙ୍କ ସମେତ କେନ୍ଦ୍ର ସରକାରର ମନ୍ତ୍ରୀମାନେ ଅଧ୍ୟାଦେଶ ଆସିବାର ଛଅ ମାସ ପରେ କାହିଁକି ବିରୋଧ କରାଯାଉଛି ବୋଲି ପ୍ରଶ୍ନ କରିଛନ୍ତି । ଏଠାରେ ଜାଣି ରଖିବା ଦରକାର ଯେ କୃଷି ଆଇନ ବିରୁଦ୍ଧରେ କୃଷକମାନଙ୍କ ଆନ୍ଦୋଳନଟି ଆଦୌ ଆକସ୍ମିକ ନଥିଲା । ଗତ ଜୁନ୍ ମାସରେ ଲକଡ଼ାଉନ୍ ସମୟରେ ଅତ୍ୟନ୍ତ ଆକସ୍ମିକ ଭାବେ କେନ୍ଦ୍ର ସରକାର ଆଣିଥିବା ତିନୋଟି କୃଷି ଅଧ୍ୟାଦେଶକୁ କଟକଣା ରହିଥିବା ସତ୍ତ୍ୱେ ପଞ୍ଜାବ ସମେତ ସାରା ଦେଶରେ କୃଷକମାନେ ପ୍ରତିବାଦ କରିଥିଲେ । 'ଦିଲ୍ଲୀ ଚଲୋ' ଡ଼ାକରା ଦେବା ପୂର୍ବରୁ ଗତ ଛଅ ମାସ ମଧ୍ୟରେ ଅଧ୍ୟାଦେଶର ପ୍ରତ୍ୟାହାର ଦାବୀରେ ଦେଶର କୋଣ ଅନୁକୋଣରେ କୃଷକମାନଙ୍କ ଲଗାତାର ଭାବେ ପ୍ରତିବାଦ ଆନ୍ଦୋଳନ କରି ଆସିଛନ୍ତି । ୨୦୧୭ ମସିହାରେ ମଧ୍ୟ ପ୍ରଦେଶର ମାନ୍ଦାସୋରରେ ପୋଲିସ ଗୁଳିରେ ପାଞ୍ଚ ଜଣ କୃଷକଙ୍କ ହତ୍ୟା ପରେ ଦେଶର ଶତାଧିକ କୃଷକ ସଙ୍ଗଠନଙ୍କୁ ନେଇ ଗଠିତ ସର୍ବଭାରତୀୟ ମିଳିତ ମଞ୍ଚ "ଅଖିଳ ଭାରତ କିଶାନ୍ ସଂଘର୍ଷ ସମନ୍ୱୟ ସିମିତି" ବା ଏଆଇକେଏସ୍‌ସିସି ପ୍ରଥମେ ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲା ।

ଏଆଇକେଏସ୍‌ସିସିର ପକ୍ଷରୁ ନଭେମ୍ବର ୨୬ ଓ ୨୭ରେ କୃଷକମାନଙ୍କ ଦିଲ୍ଲୀଚାଲ ଡ଼ାକରାରେ କୃଷି ଆଇନ ବିରୁଦ୍ଧରେ ଆନ୍ଦୋଳନ କରୁଥିବା ପଞ୍ଜାବ ଓ ହରିଆନାର ସମସ୍ତ ସଙ୍ଗଠନ ସାମିଲ ହୋଇଥିଲେ। ପରେ ଦିଲ୍ଲୀ ସୀମାରେ କୃଷକମାନଙ୍କ ଐତିହାସିକ ଆନ୍ଦୋଳନ ଆରମ୍ଭ ହେବା ପରେ କୃଷି ଆଇନର ବିରୋଧରେ ଆହୁରି ପାଞ୍ଚ ଶହରୁ ଉର୍ଦ୍ଧ୍ୱ କୃଷକ ସଙ୍ଗଠନ ମିଶି "ସଂଯୁକ୍ତ କିଶାନ ମୋର୍ଚ୍ଚା" ଗଠନ କରି ତାରି ନେତୃତ୍ୱରେ ଆନ୍ଦୋଳନକୁ ଚଳାଇଛନ୍ତି।

ତିନି କଳା କୃଷି ଆଇନ ବିରୁଦ୍ଧରେ ଗତ ଛଅ ମାସ ଧରି ଦେଶର ସବୁ ରାଜ୍ୟରେ କୃଷକଙ୍କ ପ୍ରତିବାଦ ଆନ୍ଦୋଳନ, ବିଶେଷ କରି ପଞ୍ଜାବ ଓ ହରିଆନାରେ କୃଷକଙ୍କ ଦୁର୍ବାର ଆନ୍ଦୋଳନ ସତ୍ତ୍ୱେ ମୋଦି ସରକାର ସେମାନଙ୍କ ପ୍ରତିବାଦକୁ ବେଖାତିର କରି କଳା ଅଧ୍ୟାଦେଶକୁ ଅତ୍ୟନ୍ତ ଅଗଣତାନ୍ତ୍ରିକ ଭାବେ ଆଇନରେ ପରିଣତ କରିଦେବା ପରେ ଯାଇ ହିଁ କୃଷକମାନେ ଲଢ଼େଇର ଅନ୍ତିମ ପର୍ଯ୍ୟାୟ ଭାବେ ଶେଷରେ ଦିଲ୍ଲୀ ଆସିବାକୁ ବାଧ୍ୟ ହୋଇଛନ୍ତି। ତେବେ କୃଷକଙ୍କ ଦିଲ୍ଲୀ ଅଭିଯାନଟି ଏତେ ସହଜ ନଥିଲା। ପ୍ରଥମରୁ ହିଁ ସେମାନଙ୍କୁ ଦିଲ୍ଲୀ ଆସିବାକୁ ନଦେବାକୁ ଉଭୟ କେନ୍ଦ୍ର ଓ ହରିଆନାର ବିଜେପି ସରକାର ସମସ୍ତ ପ୍ରକାର ଷଡ଼ଯନ୍ତ୍ର କରିଛନ୍ତି। କୃଷକମାନେ ଆସୁଥିବା ଗାଡ଼ି ଓ ଟ୍ରାକ୍ଟର ସବୁ ଯେପରି ଦିଲ୍ଲୀକୁ ଆସି ପାରିବନି, ସେଥିପାଇଁ ଜାତୀୟ ରାଜପଥରେ ଅନେକ ସ୍ଥାନରେ ୮-୧୦ ଫୁଟ ଲେଖାଏଁ ରାସ୍ତାକୁ ଖୋଳି ସେମାନଙ୍କୁ ଅଟକାଇବାକୁ ଚେଷ୍ଟା ହୋଇଛି। ପ୍ରବଳ ଶୀତ ସମୟରେ ଅତ୍ୟନ୍ତ ଅମାନବିକ ଭାବେ ହରିଆନା ସରକାର କୃଷକମାନଙ୍କୁ ଘଉଡ଼ାଇବା ପାଇଁ ସେମାନଙ୍କ ଉପରେ ପ୍ରଚୁର ପାଣିମାଡ଼ କରିଛନ୍ତି। ରାସ୍ତାରେ ବିଭିନ୍ନ ସ୍ଥାନରେ ହରିଆନା ଏବଂ ଦିଲ୍ଲୀ ପୋଲିସ ଆନ୍ଦୋଳନକାରୀଙ୍କ ଉପରେ ଲୁହବୁହା ଗ୍ୟାସ୍ ଏପରିକି ଲାଠିଚାଳନା ମଧ୍ୟ କରିବା ଦେଖାଯାଇଛି। ତେବେ ସମସ୍ତ ପ୍ରତିବନ୍ଧକକୁ ପାର କରି ଯେତେବେଳେ କୃଷକମାନେ ସେମାନଙ୍କ ଟ୍ରାକ୍ଟର ଟ୍ରଲି ଧରି ଦିଲ୍ଲୀ ସୀମାରେ ପହଂଚିଲେ, ସେତେବେଳେ ଯାଇ ସରକାର ବାଧ୍ୟ ହୋଇ ସେମାନଙ୍କ ସହ ଆଲୋଚନାର ପ୍ରହସନ କରିବା ଦେଖିବାକୁ ମିଳିଲା।

ଦୀର୍ଘ ଏକ ମାସରୁ ଊର୍ଦ୍ଧ ସମୟ ଧରି ଦେଶର ଲକ୍ଷ ଲକ୍ଷ କୃଷକ ନିଜର କୃଷି କାର୍ଯ୍ୟ ତଥା ଘର ପରିବାର ଛାଡ଼ି ପ୍ରବଳ ଶୀତ କାକରରେ ଖୋଲା ଆକାଶ ତଳେ ରାସ୍ତା ଉପରେ ପଡ଼ି ରହି ଶାନ୍ତିପୂର୍ଣ୍ଣ ଭାବେ ପ୍ରତିବାଦ କରୁଥିଲେ ମଧ୍ୟ, କେନ୍ଦ୍ରର ମୋଦି ସରକାର ନିଜର ଜିଦ୍‌ରୁ ଓହରିବା ଦେଖାଯାଇନି। ସରକାର ଗୋଟିଏ ପଟେ କୃଷକଙ୍କ ସହ ଆଲୋଚନାର ନାଟକ କରି ଦେଶବାସୀଙ୍କ ଆଗରେ ନିଜର ଭାବମୂର୍ତ୍ତିକୁ ରଖିବାକୁ ଚାହୁଁଛନ୍ତି ଅଥଚ ଅନ୍ୟପଟେ ପ୍ରଧାନମନ୍ତ୍ରୀଙ୍କ ସମେତ ବିଜେପିର ମନ୍ତ୍ରୀ ଓ ନେତାମାନେ କୃଷକ ଆନ୍ଦୋଳନ ବିରୁଦ୍ଧରେ ନାନା ପ୍ରକାର କୁତ୍ସା ଓ ମିଥ୍ୟା ପ୍ରଚାର କରି ତାକୁ ବଦନାମ୍ କରିବାକୁ ଚେଷ୍ଟା କରୁଛନ୍ତି। ମୋଦି ସପକ୍ଷବାଦୀ ଜାତୀୟ ଗଣମାଧ୍ୟମ (ଗୋଦି ମିଡ଼ିଆ) କେତେବେଳେ ଆନ୍ଦୋଳନକାରୀଙ୍କୁ ଖଲିସ୍ଥାନୀ, ଆତଙ୍କବାଦୀ, ଟୁକୁଡ଼ା ଟୁକୁଡ଼ା ଗ୍ୟାଙ୍ଗ୍ ତ କେତେବେଳେ ପାକିସ୍ଥାନ, ଚୀନର ଦଲାଲ, ଆଡ଼ତିଆ-ଦଲାଲମାନଙ୍କ ପ୍ରାୟୋଜିତ ଆନ୍ଦୋଳନ ଅଥବା ଆର୍ନ୍ତଜାତୀୟ ଷଡ଼ଯନ୍ତ୍ର ବୋଲି ବି ପ୍ରଚାର କରିବାକୁ ପଛେଇ ନାହିଁ।

କୃଷକ ଆନ୍ଦୋଳନକୁ ଗୁରୁତ୍ୱହୀନ ପ୍ରମାଣିତ କରିବାକୁ ପ୍ରଥମେ ଏହାକୁ କେବଳ ପଞ୍ଜାବର ଚାଷୀଙ୍କ ଆନ୍ଦୋଳନ ବୋଲି କୁହାଗଲା। ବର୍ତ୍ତମାନ ଦେଶର ବିଭିନ୍ନ ରାଜ୍ୟରୁ କିଛି ଦଲାଲଙ୍କୁ କୃଷକ ନେତା ବୋଲି ଦିଲ୍ଲୀକୁ ଆଣି ଆଇନକୁ ସବୁ କୃଷକ ବିରୋଧ କରୁନାହାନ୍ତି ବୋଲି ଦେଖାଇବାକୁ ଚେଷ୍ଟା କରାଯାଉଛି। କୃଷକ ଆନ୍ଦୋଳନର ପ୍ରଭାବକୁ ନିଷ୍ପ୍ରଭ କରିବାକୁ ବିଜେପି ଦେଶର ଶତାଧିକ ସ୍ଥାନରେ ସଭା, ସମାବେଶ କରିବା ଆରମ୍ଭ କରିଛି। ନିଜର ଛଅ ବର୍ଷର ଶାସନ କାଳରେ ପ୍ରଥମ ଥର ପାଇଁ ଏତେ ବଡ଼ ଆନ୍ଦୋଳନ ଆଗରେ ହଡ଼ବଡ଼େଇ ପ୍ରଧାନମନ୍ତ୍ରୀ ମୋଦି କେତେବେଳେ କୃଷକ ଆନ୍ଦୋଳନ ପାଇଁ ବିରୋଧୀ ଦଳଙ୍କୁ ଦାୟୀ କରୁଛନ୍ତି ତ କେତେବେଳେ କୃଷକଙ୍କ ଆଗରେ ମୁଣ୍ଡ ନୁଆଁଉଛି ବୋଲି କହିବାକୁ ପଛାଉ ନାହାନ୍ତି। ଆନ୍ଦୋଳନର ପ୍ରମୁଖ ଭାଗରେ ରହିଥିବା ପଞ୍ଜାବର ଚାଷୀମାନଙ୍କୁ ବିଭ୍ରାନ୍ତ କରିବା ପାଇଁ ସେ କେତେବେଳେ ଗୁଜରାଟର କଛରେ ଥିବା କିଛି ଶିଖ୍ ଚାଷୀଙ୍କୁ ଭେଟୁଛନ୍ତି ତ କେତେବେଳେ ଦିଲ୍ଲୀର ଗୁରୁଦ୍ୱାରରେ ଅଚାନକ ପଂହଚିଯାଉଛନ୍ତି।

ଏଠାରେ ପ୍ରଶ୍ନ ଉଠେ, ଯଦି ଆନ୍ଦୋଳନ କରୁଥିବା କୃଷକମାନେ ଆତଙ୍କବାଦୀ, ଖଲିସ୍ଥାନୀ ଓ ଦଲାଲ ତାହେଲେ ସରକାର ସେମାନଙ୍କ ସହ ଏପରି ଆଲୋଚନାର ପ୍ରହସନ କରୁଛନ୍ତି କାହିଁକି ?

## ବିରୋଧି ଦଳ ପ୍ରାୟୋଜିତ ନୁହେଁ, କୃଷକଙ୍କ ନିଜସ୍ୱ ଆନ୍ଦୋଳନ

କଳା କୃଷି ଆଇନ ବିରୁଦ୍ଧରେ କୃଷକଙ୍କ ଆନ୍ଦୋଳନ ଯେତେ ତେଜିଆନ୍ ହେଉଛି, କେନ୍ଦ୍ରର ମୋଦି ସରକାର ଓ ବିଜେପି ଦଳର ନିଜର କର୍ପୋରେଟ୍ ପ୍ରେମ ପାଇଁ ସେତେ ଏକଘରିକିଆ ହେବାରେ ଲାଗିଛନ୍ତି। ବିଜେପି ଦଳ ଖୋଲାଖୋଲି ଭାବେ କର୍ପୋରେଟ୍‌ଙ୍କ ପକ୍ଷରେ ଠିଆହୋଇ ଆଇନର ମହିମା ପ୍ରଚାର କରୁଥିବା ବେଳେ ପ୍ରାୟ ସମସ୍ତ ବିରୋଧୀ ଦଳ କୃଷକମାନଙ୍କ ଆନ୍ଦୋଳନକୁ ସମର୍ଥନ କରି କୃଷି ଆଇନକୁ ବିରୋଧ କରିବାକୁ ବାଧ ହୋଇଛନ୍ତି। ଆନ୍ଦୋଳନର ଚାପରେ ପଞ୍ଜାବର ପ୍ରମୁଖ ବିରୋଧୀ ଦଳ ଅକାଳୀ ଦଳ ଏନ୍‌ଡ଼ିଏ ମେଣ୍ଟରୁ ବାହାରିଯିବା ସହିତ କେନ୍ଦ୍ର ସରକାରରେ ମନ୍ତ୍ରୀ ଥିବା ଦଳର ନେତ୍ରୀ ଇସ୍ତଫା ଦେବାକୁ ବାଧ ହୋଇଛନ୍ତି। ସେହିପରି ବିଜେପିର ଅନ୍ୟତମ ସହଯୋଗୀ ରାଜସ୍ଥାନର ରାଷ୍ଟ୍ରୀୟ ଲୋକତାନ୍ତ୍ରିକ ପାର୍ଟି ମଧ୍ୟ ଏନ୍‌ଡ଼ିଏରୁ ବାହାରି ଯାଇ କୃଷକ ଆନ୍ଦୋଳନକୁ ଖୋଲା ସମର୍ଥନ କରିଛି। ହରିଆନାରେ ବିଜେପିର ଭାଗୁଆଳି ଦଳ ରୂପେ ପରିଚିତ ଜେଜେପି ଦଳର ଦଶ ଜଣ ବିଧାୟକଙ୍କ ମଧ୍ୟରୁ ସାତ ଜଣ ଇତି ମଧ୍ୟରେ ଖୋଲାଖୋଲି ଭାବେ କୃଷକଙ୍କ ଆନ୍ଦୋଳନକୁ ସମର୍ଥକ ଜଣାଇଥିବା ବେଳେ ସରକାରରୁ ଓହରିଯିବା ପାଇଁ ସେହି ଦଳ ଉପରେ କୃଷକଙ୍କ ଚାପ ବଢ଼ିବାରେ ଲାଗିଛି। ତେବେ ଜାଣି ରଖିବା ଦରକାର ଯେ କୃଷକ ଆନ୍ଦୋଳନକୁ ସମର୍ଥନ କରୁଥିବା କଂଗ୍ରେସ ସମେତ ବିରୋଧି ଦଳମାନଙ୍କ ଆଭିମୁଖ୍ୟଟି ସୁବିଧାବାଦୀ ଅଟେ। କୃଷକ ଆନ୍ଦୋଳନର ପ୍ରଭାବରେ ନିଜର ଜନଭିତ୍ତିକୁ ସୁରକ୍ଷିତ ରଖିବାକୁ ଯଦିଓ ସେମାନେ କୃଷି ଆଇନକୁ ବିରୋଧ କରୁଛନ୍ତି କିନ୍ତୁ ନୀତିଗତ ଭାବେ ସେମାନେ କୃଷିରେ କର୍ପୋରେଟୀକରଣର ବିରୋଧି ନୁହଁନ୍ତି। କଂଗ୍ରେସ ଦଳ ଅତିତରେ କେନ୍ଦ୍ର କ୍ଷମତାରେ ଥିବା ବେଳେ ଏଦିଗରେ ଉଦ୍ୟମ କରିଥିବା ବେଳେ ଗତ ନିର୍ବାଚନ ସମୟରେ ନିଜର ଇସ୍ତାହାରରେ କୃଷି ସଂସ୍କାର କରିବାକୁ କହିଥିଲା।

ଏପରିକି କୃଷି ଅଧ୍ୟାଦେଶ ବିରୁଦ୍ଧରେ ପଞ୍ଜାବର କୃଷକମାନେ ଆନ୍ଦୋଳନ କରୁଥିବା ବେଳେ ସେଠାକାର କଂଗ୍ରେସ ସରକାର ପୋଲିସ ଲଗାଇ ଆନ୍ଦୋଳନକୁ ଦବାଇବାକୁ ପ୍ରଥମେ ଉଦ୍ୟମ କରିଥିଲେ । ତେବେ ଦେଶର ଆନ୍ଦୋଳନରତ କୃଷକ ଓ ସେମାନଙ୍କ ସଙ୍ଗଠନମାନଙ୍କ କୃଷି ଆଇନକୁ ବିରୋଧଟି ନୀତିଗତ ଅଟେ । ପ୍ରଧାନମନ୍ତ୍ରୀ ଦେଶବାସୀଙ୍କୁ ବିଭ୍ରାନ୍ତ କରିବା ପାଇଁ ଯଦିଓ ବିରୋଧୀ ଦଳଙ୍କୁ କୃଷକମାନଙ୍କୁ ଭ୍ରମିତ କରୁଛନ୍ତି ବୋଲି କହିଛନ୍ତି, କିନ୍ତୁ ବାସ୍ତବ କଥା ହେଲା ଖୋଦ ପ୍ରଧାନମନ୍ତ୍ରୀ ଓ ତାଙ୍କ ସରକାର ଆମ୍ବାନୀ, ଆଦାନୀ, ଓ୍ୱାଲମାର୍ଟ ପରି ଦେଶୀ ବିଦେଶୀ କର୍ପୋରେଟଙ୍କ ଦଲାଲ ହୋଇ କାର୍ଯ୍ୟ କରୁଛନ୍ତି ।

## କରୋନାର ଆଢୁଆଳରେ କୃଷକଙ୍କ ଉପରେ ଆକ୍ରମଣ

କରୋନା ମହାମାରୀ ଓ ଲକ୍‌ଡ଼ାଉନ୍ ପରି ଦୋହରା ମାଡ଼ର ଶୀକାର ହୋଇ ଯେତେବେଳେ ଦେଶର ସାଧାରଣ ଜନତା ଏକଦମ୍ ନିଃସ୍ୱ ଏବଂ ଅସହାୟ ଅବସ୍ଥାରେ ରହିଥିଲେ ସେତେବେଳେ କେନ୍ଦ୍ରର ନରେନ୍ଦ୍ର ମୋଦି ନେତୃତ୍ୱାଧୀନ ବିଜେପି-ଆର୍‌ଏସ୍‌ଏସ୍‌ର ସରକାର ସେମାନଙ୍କ ବିରୁଦ୍ଧରେ ଭୟଙ୍କର ଷଡ଼ଯନ୍ତ୍ର ଚଳାଇବା ଦେଖାଗଲା । ବିପତ୍ତିକୁ ଅବସରରେ ପରିଣତ କରିବାର ନୀତିରେ ବିଶ୍ୱାସ କରୁଥିବା ବିଜେପି ସରକାର ମହାମାରୀର ମୁକାବିଲା ନାଁରେ ଗୋଟିଏ ପଟେ ସାରା ଦେଶରେ ସମସ୍ତ ପ୍ରକାର ରାଜନୈତିକ କାର୍ଯ୍ୟକ୍ରମ ଉପରେ କଟକଣା ଜାରୀ ରଖି ତାର ସୁଯୋଗରେ ଗୋଟିଏ ପରେ ଗୋଟିଏ ନିଜର ସମସ୍ତ ଜନବିରୋଧୀ କାର୍ଯ୍ୟକ୍ରମକୁ ଜନଗଣଙ୍କ ଉପରେ ଲଦିବାରେ ଲାଗିଥିଲେ । ଲକ୍‌ଡ଼ାଉନ୍ ଫଳରେ ଦେଶର କୋଟି କୋଟି ଶ୍ରମିକ ନିଜର ରୋଜଗାର ହରାଇ ଅତ୍ୟନ୍ତ ଅସହାୟ ଅବସ୍ଥାରେ ଘରକୁ ଫେରୁଥିବା ବେଳେ ସରକାର ଦେଶୀ ବିଦେଶୀ ପୁଞ୍ଜିପତିଙ୍କ ସ୍ୱାର୍ଥରେ ଶ୍ରମିକଙ୍କ କଷ୍ଟାର୍ଜିତ ଶ୍ରମ ଅଧିକାରକୁ ସମାପ୍ତି କରିଦେଇ ଶ୍ରମକୋଡ୍ ଆଣିଲେ । ସରକାରଙ୍କ ଏହି ଜନବିରୋଧୀ ଷଡ଼ଯନ୍ତ୍ରର ସଦ୍ୟତମ ଶୀକାର ହୋଇଛନ୍ତି ଦେଶର କୃଷକ, ଭାଗଚାଷୀ ଓ ସାଧାରଣ ଖାଉଟୀ । କୃଷି କ୍ଷେତ୍ରରେ କର୍ପୋରେଟ୍‌ଙ୍କ ଲୁଟ୍‌କୁ ଅବାଧ ଓ ସହଜ କରିଦେବା ପାଇଁ ଗତ ଜୁନ୍ ମାସରେ ହିଁ କୌଣସି ପ୍ରକାର ବିଚାର ଆଲୋଚନା ବିନା କୃଷି ସଂସ୍କାର ନାଁରେ ତିନୋଟି କଳା

ଅଧ୍ୟାଦେଶକୁ ଦେଶର କୋଟି କୋଟି କୃଷକଙ୍କ ଉପରେ ଏକଦମ୍ ଲଦି ଦିଆଗଲା। ଦେଶର କୃଷି କ୍ଷେତ୍ରରେ ସବଠାରୁ ବଡ଼ ମୌଳିକ ପରିବର୍ତ୍ତନ ଆଣିବାକୁ ଏପରିକି କୃଷି ଉପରେ ନିର୍ଭରଶୀଳ ଦେଶର ପ୍ରାୟ ୭୦ ଭାଗ ଜନତାଙ୍କ ଜୀବନ ଜୀବିକା ଉପରେ ଭୟଙ୍କର ପ୍ରଭାବ ପକାଇବାକୁ ଯାଉଥିବା ଉପରୋକ୍ତ ଅଧ୍ୟାଦେଶ ଗୁଡ଼ିକ ଇତି ମଧ୍ୟରେ ସଂସଦରେ ଗୃହୀତ ହୋଇ ରାଷ୍ଟ୍ରପତିଙ୍କ ଅନୁମୋଦନ ଲାଭ କରିବା ପରେ ଆଇନରେ ପରିଣତ ହୋଇସାରିଛି।

କେନ୍ଦ୍ର ସରକାର ତିନୋଟି କୃଷି ଆଇନକୁ କୃଷକମାନଙ୍କ ସ୍ୱାର୍ଥରେ ଆଣିଛନ୍ତି ବୋଲି ବାରମ୍ବାର କହୁଛନ୍ତି। କୃଷିରେ ବଡ଼ କମ୍ପାନୀମାନେ ପଶିଲେ କୃଷକଙ୍କ କ'ଣ ଲାଭ ହେବ, ତାହା ସରକାର ହିଁ ଜାଣନ୍ତି। ଏଠାରେ ପ୍ରଶ୍ନ ଉଠେ, ଯଦି ଏସବୁ ଆଇନ ଦେଶର କୃଷକଙ୍କ ସ୍ୱାର୍ଥରେ ଏତେ ଜରୁରୀ ଥିଲା, ତାହେଲେ ତାକୁ ଆଣିବା ପାଇଁ ଦେଶର କୌଣସି କୃଷକ ସଙ୍ଗଠନ ଏଯାଏଁ କେବେ ଦାବି ବା ଆନ୍ଦୋଳନ କରିନଥିଲେ କାହିଁକି ? ଯଦି ତାହା କୃଷକମାନଙ୍କ ପାଇଁ ଏତେ ଭଲ, ତାହେଲେ ଦେଶର ସମସ୍ତ କୃଷକ ସଙ୍ଗଠନ ଏହାକୁ ଏତେ ପ୍ରବଳ ବିରୋଧ କରୁଛନ୍ତି କାହିଁକି ?

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଦିଲ୍ଲୀ ଆନ୍ଦୋଳନରେ ସାମିଲ ଦେଶର ପାଞ୍ଚ ଶହରୁ ଊର୍ଦ୍ଧ୍ୱ କୃଷକ ସଙ୍ଗଠନମାନଙ୍କ କଥା ଛାଡ଼ନ୍ତୁ, ଖୋଦ ଆର୍‌ଏସ୍‌ଏସ୍‌ର ନିଜର କୃଷକ ସଙ୍ଗଠନ, ଭାରତୀୟ କିଶାନ୍ ସଂଘ ବି ସରକାରଙ୍କ ନୂଆ ଆଇନ ନେଇ ନିଜର ଅସହମତି ପ୍ରକାଶ କରିଛି। ଆର୍‌ଏସ୍‌ଏସ୍‌ର ଅନ୍ୟତମ ସଙ୍ଗଠନ ସ୍ୱଦେଶୀ ଜାଗରଣ ମଂଚ, ଏହି ଆଇନ ଯୋଗୁଁ ଭାରତର କୃଷି କ୍ଷେତ୍ରରେ ବିଦେଶୀ କମ୍ପାନୀମାନେ ପ୍ରବେଶ କରିବେ ବୋଲି ଆଶଙ୍କା ପ୍ରକାଶ କରିଛି। ଅତଏବ ସରକାରଙ୍କ ଯଦି ପ୍ରକୃତରେ ଏନେଇ କୌଣସି ଭଲ ଉଦ୍ଦେଶ୍ୟ ଥାଆନ୍ତା ତାହେଲେ କୃଷି ଉପରେ ନିର୍ଭରଶୀଳ ଦେଶର ପ୍ରାୟ ସତୁରୀ ଭାଗ ଲୋକଙ୍କ ଜୀବନକୁ ପ୍ରଭାବିତ କରିବାକୁ ଯାଉଥିବା ଏହି ଆଇନକୁ ଆଣିବା ପୂର୍ବରୁ ସମସ୍ତ ଅଂଶୀଦରମାନଙ୍କ ସହ ବ୍ୟାପକ ବିଚାର ଆଲୋଚନା କରିଥାନ୍ତେ।

# ଅଗଣତାନ୍ତ୍ରିକ ରାସ୍ତାରେ କୃଷି ଆଇନର ପ୍ରଣୟନ

ସାଧାରଣତଃ ସଂସଦର ଅଧିବେଶନ ବସି ନଥିବା ବେଳେ ଦେଶରେ ସେଭଳି କୌଣସି ଜରୁରୀ ଆବଶ୍ୟକତା ଦେଖାଗଲେ ହିଁ ସରକାର ଅଧ୍ୟାଦେଶ ଆଣିବାର ବ୍ୟବସ୍ଥା ରହିଛି । କିନ୍ତୁ କରୋନା ଏବଂ ତଜ୍ଜନିତ ଲକ୍‌ଡ଼ାଉନ୍ ଯୋଗୁଁ ଦେଶର ସାଧାରଣ ଜନତା ବସ୍ତୁତଃ ଗୃହବନ୍ଦୀ ହୋଇ ରହିଥିବା ବେଳେ ସରକାର କେଉଁ ଜରୁରୀ କାରଣରୁ ଏଭଳି ତରବରିଆ ଭାବେ କୃଷି ଅଧ୍ୟାଦେଶଗୁଡ଼ିକୁ ଆଣିଲେ ସେନେଇ ଅନେକ ପ୍ରଶ୍ନ ଉଠିବା ସ୍ୱାଭାବିକ । ଯଦି ସେସବୁ ଅଧ୍ୟାଦେଶ ପ୍ରକୃତରେ କୃଷକଙ୍କ ସ୍ୱାର୍ଥ ପାଇଁ ଉଦ୍ଦିଷ୍ଟ ତାହେଲେ କୃଷକ ଓ କୃଷକ ସଙ୍ଗଠନମାନଙ୍କୁ ବିଶ୍ୱାସକୁ ନିଆଗଲା ନାହିଁ କାହିଁକି ? କୃଷିକ୍ଷେତ୍ରରେ ଏତେ ବଡ଼ ପରିବର୍ତ୍ତନ ଆଣିବାକୁ ନିଷ୍ପତ୍ତି ନେବା ପୂର୍ବରୁ ସରକାର ଲକ୍‌ଡ଼ାଉନ୍ ସରି ଅବସ୍ଥା ସ୍ୱାଭାବିକ ହେବା ପର୍ଯ୍ୟନ୍ତ ଅପେକ୍ଷା କଲେନି କାହିଁକି ? ତେବେ କରୋନା ମହାମାରୀ ଓ ଲକ୍‌ଡ଼ାଉନ୍ ସମୟରେ ହିଁ ଏହିସବୁ ଜନବିରୋଧୀ ଅଧ୍ୟାଦେଶଗୁଡ଼ିକୁ ଆଣିବା ପଛରେ ମୁଖ୍ୟ କାରଣ ହେଲା, ଏନେଇ କୌଣସି ପ୍ରକାରର ବିରୋଧ, ଆନ୍ଦୋଳନ ଏବଂ ପ୍ରତିବାଦର ସୁଯୋଗ ନଦେବା । କାରଣ ସରକାର ଭାବିଥିଲେ ଯେ କରୋନା କଟକଣା ଓ ଲକ୍‌ଡ଼ାଉନ୍ ଲାଗି ସାରା ଦେଶରେ ସମସ୍ତ ପ୍ରକାର ରାଜନୈତିକ ଓ ସାମାଜିକ କାର୍ଯ୍ୟକଳାପ ଉପରେ କଟକଣା ଜାରୀ ରହିଛି ଏବଂ ସେତିକି ବେଳେ ଅଧ୍ୟାଦେଶକୁ ଆଣିଲେ, ଲୋକେ ତାର ବିରୋଧ କରିବାର ସୁଯୋଗ ପାଇଲେ ନାହିଁ ।

ଆମ ସମ୍ବିଧାନ ଅନୁସାରେ କୃଷି, ଏକ ରାଜ୍ୟ ତାଲିକାଭୁକ୍ତ ବିଷୟ । ଅର୍ଥାତ୍ କୃଷି ସମ୍ପର୍କିତ ସମସ୍ତ ନିଷ୍ପତ୍ତି ଏବଂ କାର୍ଯ୍ୟକ୍ରମ ରାଜ୍ୟ ସରକାରଙ୍କ କ୍ଷମତାଭୁକ୍ତ ଅଟେ । ଏପରିକି କୃଷି ସମ୍ପର୍କିତ କେନ୍ଦ୍ର ସରକାରଙ୍କ ଯେକୌଣସି ଯୋଜନାକୁ ରାଜ୍ୟ ସରକାରମାନଙ୍କ ଜରିଆରେ ହିଁ କାର୍ଯ୍ୟକାରୀ ହୋଇଥାଏ । କିନ୍ତୁ ଏହା ସତ୍ତ୍ୱେ କେନ୍ଦ୍ର ସରକାର କୃଷି କ୍ଷେତ୍ରରେ ତିନୋଟି ଗୁରୁତ୍ୱପୂର୍ଣ୍ଣ ଆଇନ ଆଣିବା ଆଗରୁ ରାଜ୍ୟ ସରକାରମାନଙ୍କ ସହ ଆଲୋଚନା କରିବାକୁ କିମ୍ବା ସେମାନଙ୍କ ମତାମତ ନେବାକୁ ବି ଉଚିତ ମନେ କଲେନି । ଆଜି କୃଷି ଆଇନ ବିରୁଦ୍ଧରେ ଚାଲିଥିବା ଆନ୍ଦୋଳନ

ପାଇଁ ଦେଶର ବିରୋଧି ଦଳମାନଙ୍କୁ ସମାଲୋଚନା କରୁଥିବା ସରକାର ଆଇନ ପ୍ରଣୟନ ପୂର୍ବରୁ ସେମାନଙ୍କ ସହ ଆଲୋଚନା କରିବାକୁ ଉଚିତ ମନେ କରିନାହାନ୍ତି । ସବୁଠାରୁ ବଡ଼ କଥା ହେଲା, ବିଲ୍ ଉପରେ ଖୋଦ୍ ସଂସଦରେ ମଧ୍ୟ କୌଣସି ସାର୍ଥକ ଆଲୋଚନା କରିବାକୁ ସୁଯୋଗ ଦିଆଗଲାନି । ମାତ୍ର କିଛି ଘଣ୍ଟା ମଧ୍ୟରେ ଅତ୍ୟନ୍ତ ଅଗଣତାନ୍ତ୍ରିକ ଭାବେ ବାଚନିକ ଭୋଟରେ କୃଷିବିଲ୍‌କୁ ଯେଉଁଭଳି ଭାବେ ପାସ୍ କରାଇଲେ ସେଥିରୁ ସରକାରଙ୍କ ମନ୍ଦ ଉଦ୍ଦେଶ୍ୟଟି ସ୍ପଷ୍ଟ ଜଣାପଡୁଛି ।

ସରକାର କୃଷକଙ୍କ ସ୍ୱାର୍ଥରକ୍ଷା ନାଁରେ ଆଣିଥିବା ଉପରୋକ୍ତ ତିନୋଟି ଆଇନ ଯେ ପ୍ରକୃତରେ ଦେଶର କୃଷକଙ୍କ ସର୍ବନାଶ କରିବାକୁ ଯାଉଛି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ଏହି କାରଣରୁ ହିଁ ସମଗ୍ର ପ୍ରକ୍ରୀୟାରେ କୃଷକ, ଉପଭୋକ୍ତା, ରାଜ୍ୟ ସରକାର, ବିରୋଧୀ ଦଳ ପରି କୌଣସି ବି ଅଂଶୀଦାରଙ୍କୁ ବିଶ୍ୱାସକୁ ନନେଇ ଅତ୍ୟନ୍ତ ଗୋପନୀୟ ଓ ତରବରିଆ ଭାବେ ଆଇନକୁ ଆଣିବାକୁ ଷଡ଼ଯନ୍ତ୍ର କରିଛନ୍ତି । ଆଜି କୃଷକଙ୍କ ବିରୋଧ ପରେ ବି ସରକାର ଉପରୋକ୍ତ କଳା ଆଇନଗୁଡ଼ିକୁ ଫେରାଇବାକୁ କିମ୍ବା ସେନେଇ କୃଷକ ନେତାମାନଙ୍କ ସହ କୌଣସି ସାର୍ଥକ ମନଖୋଲା ଆଲୋଚନା କରିବାକୁ ବି ପ୍ରସ୍ତୁତ ନହେବା, ସରକାରର ଜନବିରୋଧୀ ତଥା ଫାଶିବାଦୀ ଆଭିମୁଖ୍ୟକୁ ହିଁ ଉଜାଗର କରୁଛି ।

## ତିନୋଟି କୃଷି ଆଇନ କ'ଣ ?

କୃଷି କ୍ଷେତ୍ରରେ ସଂସ୍କାର ନାଁରେ ସରକାର ଯେଉଁ ତିନୋଟି ଆଇନ ଆଣିଛନ୍ତି, ସେଗୁଡ଼ିକ ହେଲା – ୧) ଅତ୍ୟାବଶ୍ୟକ ସାମଗ୍ରୀ ଆଇନ (ସଂଶୋଧନ) ଆଇନ -୨୦୨୦, ୨) କୃଷି ଉତ୍ପାଦର ବ୍ୟବସାୟ ଓ ବାଣିଜ୍ୟ (ପ୍ରୋତ୍ସାହନ ଓ ସୁଗମୀକରଣ) ଆଇନ – ୨୦୨୦ ଏବଂ ୩) କୃଷକଙ୍କ ମୂଲ୍ୟ ଆଶ୍ୱାସନ(ସଶକ୍ତୀକରଣ ଓ ସୁରକ୍ଷା) ଓ କୃଷିସେବା ଆଇନ – ୨୦୨୦। ଉପରୋକ୍ତ ତିନୋଟି ଆଇନ ଜରିଆରେ ସରକାର ଦେଶର କୃଷି ଏବଂ ତା'ସହ ଜଡ଼ିତ କୃଷିଜାତ ଦ୍ରବ୍ୟର ସଂଗ୍ରହ, ଭଣ୍ଡାରଣ, ଦର ନିର୍ଦ୍ଧାରଣ, ବିକ୍ରୀ, ପ୍ରକ୍ରିୟାକରଣ ଏବଂ ବାଣିଜ୍ୟ ପରି ସମସ୍ତ କ୍ଷେତ୍ରରେ ମୁକ୍ତ ବଜାର ନାଁରେ ଚାଷୀ ଓ ଜନଗଣଙ୍କ ସ୍ୱାର୍ଥରକ୍ଷା ପାଇଁ ପୂର୍ବରୁ ରହି ଆସିଥିବା ସମସ୍ତ ସରକାରୀ କଟକଣାକୁ ହଟେଇ ଦେଇ

ଦେଶୀ ବିଦେଶୀ କମ୍ପାନୀଙ୍କ ଅବାଧ ପ୍ରବେଶ ପାଇଁ ରାସ୍ତାକୁ ଏକଦମ୍ ଖୋଲି ଦେଇଛନ୍ତି। ଏହାଦ୍ୱାରା ଦେଶରେ ଗୋଟିଏ ଏକକ କୃଷି ବଜାର ପ୍ରତିଷ୍ଠା ହେବ, କୃଷିକ୍ଷେତ୍ରରେ ବିପୁଳ ପୁଞ୍ଜିନିବେଶ ଫଳରେ ଭିତ୍ତିଭୂମିର ବିକାଶ ଘଟିବ, କୃଷିଜାତ ଦ୍ରବ୍ୟର ସଂଗ୍ରହରେ ଥିବା ଦଲାଲ ବ୍ୟବସ୍ଥାର ଉଚ୍ଛେଦ ହେବ, କମ୍ପାନୀମାନେ ଆସିବା ଫଳରେ ଚାଷୀମାନେ ନିଜର ଉତ୍ପାଦର ଭଲ ଦାମ୍ ପାଇବେ ଏବଂ ସର୍ବୋପରି ଦେଶର କୃଷି ଉତ୍ପାଦନରେ ବୃଦ୍ଧି ଘଟିବ ବୋଲି ସରକାର ଯୁକ୍ତି କରୁଛନ୍ତି। କିନ୍ତୁ ଏଭଳି ଯୁକ୍ତି ତଥ୍ୟସଙ୍ଗତ ନୁହେଁ ବରଂ ସମ୍ପୂର୍ଣ୍ଣ ରୂପେ ଭିତ୍ତିହୀନ ମନେହୁଏ।

ଅସଲ କଥା ହେଉଛି, ସରକାର ଚାଷୀର ସ୍ୱାର୍ଥରକ୍ଷା ପାଇଁ କୃଷି ଉତ୍ପାଦର କିଣାବିକାରେ ଏଯାଏଁ ଯାହା ବି କିଛି ନିୟନ୍ତ୍ରଣ ଓ କଟକଣା ରଖିଥିଲେ କୃଷି ଆଇନ ଜରିଆରେ ସେସବୁକୁ ହଟାଇ ଦେଇ କୃଷିରେ ଦେଶୀ ବିଦେଶୀ ପୁଞ୍ଜିର ଅବାଧ ପ୍ରବେଶର ଦୁଆରକୁ ଖୋଲିବା ସହ ଭାରତୀୟ କୃଷିର କର୍ପୋରେଟୀକରଣ କରିବାକୁ ଯାଉଛନ୍ତି। କୃଷିକ୍ଷେତ୍ରରେ ସଂସ୍କାର ନାଁରେ ସରକାରଙ୍କ ଉପରୋକ୍ତ ତିନୋଟି କୃଷି ଆଇନ କୃଷକଙ୍କ ବଦଳରେ କର୍ପୋରେଟ୍‌ଙ୍କ ସ୍ୱାର୍ଥକୁ ଅଗ୍ରାଧିକାର ଦେଉଛି। ଅତଏବ ଏହି ଆଇନ ଲାଗୁହେଲେ ଦେଶର ସାଧାରଣ କୃଷକ, କୃଷି ଶ୍ରମିକ ଏବଂ ଖାଉଟୀମାନଙ୍କ ଅଧିକାର ଚାଲିଯିବା ସହିତ ବଡ଼ ବ୍ୟବସାୟୀ ଓ କର୍ପୋରେଟମାନଙ୍କ ପାଇଁ ସୁପର୍ ମୁନାଫା ଆଣିବାକୁ ଯାଉଛି ବୋଲି ଦେଶର କୃଷକମାନେ ତାର ଜୋରଦାର ବିରୋଧ କରୁଛନ୍ତି।

## ଅତ୍ୟାବଶ୍ୟକ ସାମଗ୍ରୀ (ସଂଶୋଧନ) ଆଇନ - ୨୦୨୦

ଦେଶର ଜନଗଣଙ୍କ ପାଇଁ ଅତ୍ୟାବଶ୍ୟକ ସାମଗ୍ରୀ ରୂପେ ପରିଚିତ ଚାଉଳ, ଗହମ, ଚିନି, ଡ଼ାଲି ଜାତୀୟ ଖାଦ୍ୟ, ଖାଇବା ତେଲ, ପିଆଜ ଏବଂ ଆଳୁ ଆଦି କୃଷି ଉତ୍ପାଦର ବଜାରରେ ନିରନ୍ତର ଓ ସୁଲଭ ମୂଲ୍ୟରେ ଉପଲବ୍ଧକୁ ସୁନିଶ୍ଚିତ କରିବା ପାଇଁ ସରକାର ୧୯୫୫ ମସିହାରେ 'ଅତ୍ୟାବଶ୍ୟକ ସାମଗ୍ରୀ ଆଇନ-୧୯୫୫'ର ପ୍ରଣୟନ କରିଥିଲେ। ଏହି ଆଇନରେ ଉପରୋକ୍ତ ଉତ୍ପାଦ ସବୁ ଅତ୍ୟାବଶ୍ୟକ ସାମଗ୍ରୀ ରୂପେ ତାଲିକାଭୁକ୍ତ କରିବା ସହ ବଜାରରେ ସେସବୁର ଯୋଗାଣ ଏବଂ ମୂଲ୍ୟ ଉପରେ ନିୟନ୍ତ୍ରଣ ପାଇଁ ରାଜ୍ୟ ସରକାରଙ୍କୁ କ୍ଷମତା ପ୍ରଦାନ

କରାଯାଇଥିଲା । ଅସାଧୁ ବ୍ୟବସାୟୀଙ୍କ ଦ୍ୱାରା ସେସବୁ ସାମଗ୍ରୀର ଜମାଖୋରୀ ଏବଂ କଳାବଜାରୀକୁ ରୋକିବା ପାଇଁ ସେସବୁର ଜମା ବା ଭଣ୍ଡାରଣର ଏକ ସୀମା ସ୍ଥିର ହୋଇଥିଲା । ଯେଉଁ ବ୍ୟବସାୟୀମାନେ ଏହି ଆଇନକୁ ଉଲଂଘନ କରି ଧାର୍ଯ୍ୟ ସୀମା ଠାରୁ ଅଧିକ ସାମଗ୍ରୀ ନିଜର ଗୋଦାମରେ ଜମା କରି ରଖି ବଜାରରେ କୃତ୍ରିମ ଅଭାବ ସୃଷ୍ଟି କରୁଥିଲେ ଏବଂ କିମ୍ବା ଚଢ଼ା ଦରରେ ବିକ୍ରୀ କରୁଥିଲେ, ସେମାନଙ୍କ ବିରୋଧରେ ଆଇନଗତ କାର୍ଯ୍ୟାନୁଷ୍ଠାନ ଏବଂ ଚଢ଼ଉ ପାଇଁ ସରକାରଙ୍କ ପାଖରେ କ୍ଷମତା ରହିଥିଲା । ଯଦିଓ ଅନେକ ସମୟରେ ଦୁର୍ନୀତିଗ୍ରସ୍ତ ସରକାରୀ ଅଧିକାରୀମାନେ କଳାବଜାରୀଙ୍କ ସହ ସଲାସୁତୁରା କରି ଏହି କ୍ଷମତାର ଉପଯୋଗ କରୁ ନଥିଲେ କିନ୍ତୁ ଏହି ଆଇନ ଯୋଗୁଁ କଳାବଜାରୀକୁ ରୋକିବାର କ୍ଷମତାଟି ସେମାନଙ୍କ ପାଖରେ ରହିଥିଲା ।

ଏହି ଆଇନରେ ଉଭୟ କୃଷକ ଏବଂ ଖାଉଟୀଙ୍କ ସ୍ୱାର୍ଥର ଅନୁକୂଳ ଥିଲା । କାରଣ ଫସଲ ଉତ୍ପାଦନ ପରେ ଚାଷୀ ତୁରନ୍ତ ନିଜର ଋଣ ଶୁଝିବାକୁ ତଥା ଫସଲକୁ ରୋଗପୋକ ଦାଉରୁ ସାଇତି ରଖିବାକୁ ଆବଶ୍ୟକୀୟ ଭିତ୍ତିଭୂମିର ଅଭାବରୁ ନିଜର ଫସଲକୁ ଯଥାଶୀଘ୍ର ବିକ୍ରୀ କରିବାକୁ ବାଧ ହୋଇଥାଏ । ଚାଷୀର ଏହି ସଙ୍କଟର ସୁଯୋଗ ନେଇ ଅସାଧୁ ବେପାରୀମାନେ ସାଧାରଣତଃ ଅମଳ ସମୟରେ ତା'ଠାରୁ ଶସ୍ତାରେ ବିପୁଳ ପରିମାଣର କୃଷି ଉତ୍ପାଦକୁ କିଣି ନେଇଥାନ୍ତି । ନିଜର ପୁଞ୍ଜି ବଳରେ ବିପୁଳ ପରିମାଣରେ ସେସବୁ ଉତ୍ପାଦକୁ ଗୋଦାମରେ ମାସ ମାସ ଧରି ଜମା ରଖି ବଜାରକୁ ଛାଡ଼ି ନଥାନ୍ତି । ଏହାଦ୍ୱାରା ବଜାରରେ କୃତ୍ରିମ ଅଭାବ ସୃଷ୍ଟି ହୋଇ ସେସବୁର ଦର ଆକାଶଛୁଆଁ ହୋଇଥାଏ । ସେତେବେଳେ ଯାଇ ଚଢ଼ା ଦରରେ ଖାଉଟୀମାନଙ୍କୁ ବିକ୍ରି କରି ବିପୁଳ ମୁନାଫା କମାଇଥାନ୍ତି । ଅତଏବ ଅସାଧୁ ବ୍ୟବସାୟୀ ବା କମ୍ପାନୀଙ୍କ କବଳରୁ ସାଧାରଣ ଉପଭୋକ୍ତାଙ୍କୁ ସୁରକ୍ଷିତ କରି ସେମାନଙ୍କ ଖାଦ୍ୟ ସୁରକ୍ଷାକୁ ନିଶ୍ଚିତ କରିବା ତଥା ଫସଲର ଅମଳ ସମୟରେ ସେସବୁ ଉତ୍ପାଦର ଅଭାବୀ ବିକ୍ରୀକୁ ରୋକି ଚାଷୀଙ୍କୁ ସୁରକ୍ଷା ଦେବା ଏହି ଆଇନର ଉଦ୍ଦେଶ୍ୟ ଥିଲା । ଏହାରି ଅର୍ନ୍ତଗତ ସରକାରଙ୍କୁ ଅତ୍ୟାବଶ୍ୟକ ବୋଲି ଘୋଷିତ ସାମଗ୍ରୀର ଉତ୍ପାଦନ, ଭଣ୍ଡାରଣ, ଯୋଗାଣ, ବିତରଣ ଏବଂ ଉଚିତ ଦାମକୁ ସୁନିଶ୍ଚିତ କରିବାକୁ ଅଧିକାର ଦିଆଯାଇଥିଲା ।

## ନୂଆଁ ଆଇନ ଲାଗି ଅତ୍ୟାବଶ୍ୟକ ସାମଗ୍ରୀର ଦାମ୍ ଆକାଶଛୁଆଁ ହେବ

ଦେଶରେ ଅତ୍ୟାବଶ୍ୟକ ସାମଗ୍ରୀ ଆଇନ-୧୯୫୫ ରହିଥିବା ସତ୍ତ୍ୱେ ବଜାରରେ ମଝି ମଝିରେ ଆଳୁ, ପିଆଜ ଓ ଡ଼ାଲି ପରି ଅତ୍ୟାବଶ୍ୟକ ସାମଗ୍ରୀର ଦର ଆକାଶଛୁଆଁ ହେବା ଦେଖାଯାଇଛି। ସେଭଳି ପରିସ୍ଥିତି ସୃଷ୍ଟି ହେଲେ ସରକାରଙ୍କ ଯୋଗାଣ ବିଭାଗ ଅସାଧୁ ବ୍ୟବସାୟୀଙ୍କ ଗୋଦାମ ଉପରେ ଚଢ଼ାଉ କରି ତଥା ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ବଜାର ଦରକୁ ନିୟନ୍ତ୍ରଣ କରିଥାନ୍ତି। ଆବଶ୍ୟକ ସ୍ଥଳେ ସରକାର ଲୋକଙ୍କୁ ସୁଲଭ ଦରରେ ସେସବୁ ସାମଗ୍ରୀକୁ ଯୋଗାଇଥାନ୍ତି। ଆଜିର ପରି ମହାମାରୀ ପରିସ୍ଥିତି ବା ସଙ୍କଟ ସମୟରେ ଅତ୍ୟାବଶ୍ୟକ ସାମଗ୍ରୀ ଭାବେ ପରିଚିତ ସେସବୁ ଉତ୍ପାଦର ବେଆଇନ ଜମାଖୋରୀ ଏବଂ ବଜାରରେ ସେସବୁର କୃତ୍ରିମ ଅଭାବକୁ ରୋକି ତାର ମୂଲ୍ୟକୁ ସ୍ଥିର ରଖିବାରେ ଏହା ହିଁ ଏକମାତ୍ର ଆଇନ ଥିଲା। ସରକାର ଏହାକୁ ସଂଶୋଧନ କରି ଯେଉଁ ନୂଆ ଆଇନ ଆଣିଛନ୍ତି ତାହା ଉଭୟ କୃଷକ ଏବଂ ଖାଉଟୀଙ୍କୁ କ୍ଷତିଗ୍ରସ୍ତ କରିବ।

କିନ୍ତୁ ସରକାରଙ୍କ ଦ୍ୱାରା ସଦ୍ୟ ସଂଶୋଧିତ ନୂଆ ଆଇନରେ ଖାଦ୍ୟଶସ୍ୟ, ଡ଼ାଲି, ଖାଇବା ତେଲ ସହିତ ଅନ୍ୟାନ୍ୟ ତୈଳବୀଜ, ଆଳୁ ଓ ପିଆଜ ପରି ୨୦ଟି କୃଷିଜାତ ସାମଗ୍ରୀକୁ ଅତ୍ୟାବଶ୍ୟକ ସାମଗ୍ରୀ ତାଲିକାରୁ ହିଁ ବାଦ ଦିଆଯାଇଛି। ଏଣିକି ଜନଗଣଙ୍କ ପାଇଁ ଏସବୁ ସାମଗ୍ରୀର ସହଜ ଓ ଶସ୍ତା ଉପଲବ୍ଧତାକୁ ନିଶ୍ଚିତ କରିବାର ଦାୟୀତ୍ୱଟି ଆଉ ସରକାରଙ୍କ ନୁହେଁ। ଏସବୁର କ୍ରୟ ଏବଂ ଗୋଦାମରେ ଜମା ରଖିବା ନେଇ ପୂର୍ବ ଭଳି ଆଉ କୌଣସି ସୀମା ବା କଟକଣା ରହିବନି। ଅର୍ଥାତ୍ କମ୍ପାନୀ ବା ବ୍ୟବସାୟୀମାନେ ଏସବୁ ସାମଗ୍ରୀକୁ ଯେତେ ଇଛା ପାରିବେ, ଗୋଦାମ ବା ଶୀତଳ ଭଣ୍ଡାରରେ ମାସ ମାସ ଧରି ଜମା କରି ରଖିପାରିବେ। କମ୍ପାନୀ ସେସବୁ ସାମଗ୍ରୀକୁ କେଉଁଠାରେ ଏବଂ କେଉଁ ଦାମ୍‌ରେ ବିକ୍ରି କରିବେ ସେଥିରେ ବି ସରକାର ଆଉ ହସ୍ତକ୍ଷେପ ରହିବନି। ଗୋଟିଏ କଥାରେ କହିଲେ ସରକାର ଏହି ଆଇନ ଜରିଆରେ ଦେଶରେ ଖାଦ୍ୟ ସାମଗ୍ରୀର ମହଜୁଦ୍‌କାରୀ ଏବଂ କଳାବଜାରୀଙ୍କ ପାଇଁ ପୂର୍ବରୁ ରଖିଥିବା ସବୁ ପ୍ରତିବନ୍ଧକକୁ ଏବେ ହଟାଇଦେଲେ।

ଅତ୍ୟାବଶ୍ୟକ ଭାବେ ପରିଚିତ ସାମଗ୍ରୀର କାରବାର ଓ ଦାମ ଉପରେ ସରକାରୀ ନିୟନ୍ତ୍ରଣଟି ଉଠିଗଲେ ବଜାରରେ ସେସବୁର ଦାମ୍ ଲଗାମଛଡ଼ା ହୋଇଯିବ। ଦେଶର ସାଧାରଣ ବଜାର ବ୍ୟବସ୍ଥା ସମ୍ପୂର୍ଣ୍ଣ ଭାବେ ରିଲାଏନ୍ସ, ଆଦାନୀ, ୱାଲମାର୍ଟ ପରି ବଡ଼ କମ୍ପାନୀଙ୍କ ନିୟନ୍ତ୍ରଣକୁ ଚାଲିଯିବ। ଭାରତ ବର୍ଷର ୬୦ ଲକ୍ଷ କୋଟି ଟଙ୍କାର ଖାଦ୍ୟ ପ୍ରକ୍ରିୟାକରଣ ବଜାର ଉପରେ ବହୁ ପୂର୍ବରୁ ହିଁ ଏହି କମ୍ପାନୀମାନଙ୍କର ଲୋଲୁପ ଦୃଷ୍ଟି ପଡିଛି । ନୂଆଁ ଆଇନରେ କଟକଣା ନଥିବାରୁ ବଡ଼ ବ୍ୟବସାୟୀ ଓ କମ୍ପାନୀମାନେ ନିଜର ଅମାପ ପୁଞ୍ଜି ବଳରେ ବିପୁଳ ପରିମାଣର ସାମଗ୍ରୀକୁ ନିଜ ଗୋଦାମରେ ମାସ ମାସ ଧରି ଗଚ୍ଛିତ ରଖିବେ। ଅତ୍ୟନ୍ତ ଯୋଜନାବଦ୍ଧ ଭାବେ ବଜାରରେ ସେସବୁର କୃତ୍ରିମ ଅଭାବ ସୃଷ୍ଟି କରିବେ ଏବଂ ମନଇଛା ଦରରେ ସେସବୁକୁ ବିକ୍ରି କରି ସାଧାରଣ ଜନତାଙ୍କୁ ଲୁଟିବେ। ନିକଟରେ ଦେଶରେ ଆଳୁ, ପିଆଜର ଆକାଶଛୁଆଁ ଦରବୃଦ୍ଧି ପଛରେ ଏହି ବଡ଼ କମ୍ପାନୀଙ୍କ ଜମାଖୋରୀ ମୁଖ୍ୟ କାରଣ ବୋଲି ଜଣାପଡ଼ିଛି। ଅତଏବ ସରକାରଙ୍କ ନୂଆ ଆଇନ ଫଳରେ ଅତ୍ୟାବଶ୍ୟକ ସାମଗ୍ରୀ ଗୁଡ଼ିକର ବଜାର ଉପରେ କମ୍ପାନୀମାନଙ୍କ ଏକାଧିକାର ପ୍ରତିଷ୍ଠା ହେବା ସହ ସେସବୁର ଦାମ୍ ଅତିଶୟ ବୃଦ୍ଧି ପାଇବ। ଏହାଦ୍ୱାରା ସାଧାରଣ ଖାଉଟୀ ହିଁ ଶୋଷଣର ଶୀକାର ହେବେ। ବିଶେଷ କରି ବଜାରରେ ଖାଦ୍ୟଶସ୍ୟର ଦାମ୍ ବଢ଼ିଲେ ଖାଦ୍ୟ ସୁରକ୍ଷାର ସଙ୍କଟକୁ ସାମନା କରୁଥିବା ଦେଶରେ ଅଧିକାଂଶ ଲୋକଙ୍କ ପକ୍ଷରେ ସେସବୁକୁ କିଣିବା ସମ୍ଭବ ହେବନି। ଫଳସ୍ୱରୂପ ଦେଶରେ କ୍ଷୁଧା, ଅନାହାର ତଥା ପୁଷ୍ଟିହୀନତା ବୃଦ୍ଧି ପାଇ ଲୋକଙ୍କ ଖାଦ୍ୟ ସୁରକ୍ଷା ବିପନ୍ନ ହେବ।

ଜନଗଣଙ୍କୁ ଭୂଆଁ ବୁଲେଇବା ପାଇଁ ଆଇନରେ କୁହାଯାଇଛି ଯେ କେବଳ ଯୁଦ୍ଧ ଅଥବା ଦୁର୍ଭିକ୍ଷ ସମୟରେ ହିଁ ସରକାର ଉପରୋକ୍ତ ଅତ୍ୟାବଶ୍ୟକ ସାମଗ୍ରୀର ବଜାର ଦର ଉପରେ ହସ୍ତକ୍ଷେପ କରି ପାରିବେ। ତେବେ ଯୁଦ୍ଧ ଓ ଦୁର୍ଭିକ୍ଷ ଯେ ସବୁବେଳେ ଆସେନି ଏକଥା ସମସ୍ତେ ଜାଣନ୍ତି। ଏହା ବ୍ୟତିତ କେତୋଟି ସାମଗ୍ରୀର ମୂଲ୍ୟରେ ୧୦୦% ବୃଦ୍ଧି ହେଲେ ଏବଂ ସହଜରେ ନଷ୍ଟ ହୋଇଯାଉଥିବା କୃଷିଜାତ ସାମଗ୍ରୀର କ୍ଷେତ୍ରରେ ୫୦% ମୂଲ୍ୟବୃଦ୍ଧି ଘଟିଲେ ବି ସରକାର ହସ୍ତକ୍ଷେପ କରିବେ

ବୋଲି କୁହାଯାଇଛି । ଏହାର ଅର୍ଥ ହେଲା ସମ୍ପୃକ୍ତ ସାମଗ୍ରୀର ଯଥାକ୍ରମେ ୯୯.୯୯% ଓ ୪୯.୯୯% ଦରବୃଦ୍ଧି ପର୍ଯ୍ୟନ୍ତ ସରକାରଙ୍କ ହସ୍ତକ୍ଷେପ ରହିବନାହିଁ । ଅର୍ଥାତ୍ ବର୍ତ୍ତମାନ ଯଦି ଆଳୁ ଦର ୩୦ଟଙ୍କା ରହିଛି ତାହା ବର୍ଷ ମଧ୍ୟରେ ୬୦ଟଙ୍କା ପର୍ଯ୍ୟନ୍ତ ବଢ଼ିଲେ ବି ସରକାର କିଛି କରିବେ ନାହିଁ, ପିଆଜ ଦର ବର୍ତ୍ତମାନ ଯଦି ୫୦ ଟଙ୍କା ରହିଛି ତାହା ବଢ଼ି ବର୍ଷବ୍ୟାପୀ ୧୦୦ ଟଙ୍କା ପର୍ଯ୍ୟନ୍ତ ରହିଲେ ସରକାର ହସ୍ତକ୍ଷେପ କରିବେ ନାହିଁ । ପରବର୍ତ୍ତୀ ବର୍ଷ ଆଳୁ ୧୨୦ ପର୍ଯ୍ୟନ୍ତ ହେଲେ ମଧ୍ୟ ହସ୍ତକ୍ଷେପ କରାଯିବ ନାହିଁ । ଧର୍ମକୁ ଆଖି ଠାର ନ୍ୟାୟରେ ଯଦି ଏହି ଧାରା ଚାଲେ ତାହେଲେ ବଜାରରେ ଅତ୍ୟାବଶ୍ୟକ ସାମଗ୍ରୀର ଦରଦାମ କ'ଣ ହେବ ତାହା ସହଜରେ ଅନୁମେୟ । ଅତଏବ ସରକାରଙ୍କ ନୂଆଁ ଆଇନରେ ସାଧାରଣ ଖାଉଟୀ ନା ଆଉ କିଏ ଲାଭବାନ୍ ହେବାକୁ ଯାଉଛି, ତାହା ସ୍ପଷ୍ଟ ବୁଝାପଡୁଛି ।

## କର୍ପୋରେଟ୍‌ଙ୍କ ଶୀତଳ ଭଣ୍ଡାର କୃଷକଙ୍କ ପାଇଁ ନୁହେଁ

ଆମ ଦେଶରେ କୃଷି ସଙ୍କଟ ଓ କୃଷିର ଆବଶ୍ୟକୀୟ ବିକାଶ ନହେବା ପଛରେ ଅନ୍ୟତମ କାରଣ ହେଉଛି, କୃଷି ପାଇଁ ଆବଶ୍ୟକ ଭିତ୍ତିଭୂମିର ଅଭାବ । କ୍ରମାଗତ ଭାବେ ସବୁ ସରକାର ଜଳସେଚନ, ଗୋଦାମ, ଶୀତଳ ଭଣ୍ଡାର, ମଣ୍ଡି ଆଦି ଭିତ୍ତିଭୂମିର ନିର୍ମାଣ ପାଇଁ ଆବଶ୍ୟକୀୟ ବ୍ୟୟବରାଦ କରିବାରେ ବିଫଳ ହୋଇଛନ୍ତି । ପରିଣାମ ସ୍ୱରୂପ, କୃଷି ଜାତ ଦ୍ରବ୍ୟ ଗଚ୍ଛିତ ରଖିବା ପାଇଁ ଦେଶର ୮୨ ଭାଗ କୃଷକଙ୍କ ପାଖରେ କୌଣସି ଆବଶ୍ୟକୀୟ ବ୍ୟବସ୍ଥା ନାହିଁ । ଦେଶରେ କୃଷିରେ ସରକାରୀ ବ୍ୟୟକୁ ବଢ଼ାଇବାକୁ ତଥା କୃଷି ପାଇଁ ଆବଶ୍ୟକ ଭିତ୍ତିଭୂମି ସୃଷ୍ଟି କରିବାକୁ କୃଷକ ସଙ୍ଗଠନମାନେ ଲଗାତର ଦାବୀ କରି ଆସିଛନ୍ତି । କିନ୍ତୁ କେନ୍ଦ୍ର ସରକାର ଭାରତୀୟ ଖାଦ୍ୟ ନିଗମ ଏବଂ ଅନ୍ୟାନ୍ୟ ସଂସ୍ଥା ଜରିଆରେ କୃଷକଙ୍କ ଆବଶ୍ୟକତା ଦୃଷ୍ଟିରୁ ନୂଆ ଗୋଦାମ ଏବଂ ଶୀତଳ ଭଣ୍ଡାର ନଖୋଲି ଏବେ ଏହି ଦାୟୀତ୍ୱଟି ଦେଶୀ ବିଦେଶୀ କର୍ପୋରେଟଙ୍କ ହାତରେ ଟେକିଦେବାକୁ ଯାଉଛନ୍ତି ।

ଅତ୍ୟାବଶ୍ୟକ ସାମଗ୍ରୀ ଆଇନରେ ସଂଶୋଧନ କରି କର୍ପୋରେଟ୍‌ମାନଙ୍କୁ ଖାଦ୍ୟଶସ୍ୟର ଅସୀମିତ ଭଣ୍ଡାରଣ ପାଇଁ ଅନୁମତି ଦେବା ପଛରେ ସରକାରଙ୍କ ଯୁକ୍ତି ହେଲା, ଏହା ଫଳରେ କର୍ପୋରେଟ୍‌ମାନେ ନିଜର ପୁଞ୍ଜିନିବେଶ କରି ଦେଶରେ

ବଡ଼ ବଡ଼ ଗୋଦାମ୍ ଓ ଶୀତଳ ଭଣ୍ଡାର ଖୋଲିବେ । ଅତ୍ୟାବଶ୍ୟକ ସାମଗ୍ରୀ ଆଇନରେ ସଂଶୋଧନର ଅନେକ ପୂର୍ବରୁ ମୋଦି ସରକାରର ଘନିଷ୍ଠ କମ୍ପାନୀ ଆଦାନୀ ଦେଶର ଶତାଧିକ ଜିଲ୍ଲାରେ ନିଜର ବୃହତ୍ତାକାୟ ଗୋଦାମ ଓ ଶୀତଳ ଭଣ୍ଡାର ନିର୍ମାଣ କରି ସାରିଛି ଅଥବା କରିବାକୁ ବୁଝାମଣା କରିଛି । କିନ୍ତୁ ଏହିସବୁ ଗୋଦାମ ଓ ଶୀତଳଭଣ୍ଡାରରେ ସାଧାରଣ ଚାଷୀର ନୁହେଁ ବରଂ ବଡ଼ କମ୍ପାନୀମାନଙ୍କ ଦ୍ୱାରା ସଂଗୃହୀତ ସାମଗ୍ରୀ ହିଁ ଗଚ୍ଛିତ ରହିପାରିବ । ସେମାନେ କୃଷକଙ୍କ ଠାରୁ ଶସ୍ତାରେ କିଣିଥିବା ସାମଗ୍ରୀକୁ ଗଚ୍ଛିତ କରି ରଖି ମହଙ୍ଗା ସମୟରେ ବଜାରକୁ ଛାଡ଼ି ବିପୁଳ ମୁନାଫା କମାଇବାକୁ ଏସବୁ ଭିତ୍ତିଭୂମିକୁ ବ୍ୟବହାର କରିବେ । ଅତଏବ କୃଷି କ୍ଷେତ୍ରରେ ଘରୋଇ ବା କର୍ପୋରେଟ୍ ପୁଞ୍ଜି ଆସିଲେ ଗୋଦାମ, ଶୀତଳ ଭଣ୍ଡାର ପରି ଭିତ୍ତିଭୂମି ସୃଷ୍ଟି ହେବ ଏବଂ ସାଧାରଣ ଚାଷୀ ତାର କୃଷି ଉତ୍ପାଦକୁ ସେଥିରେ ସାଇତି କରିବାକୁ ସୁଯୋଗ ପାଇବ ବୋଲି ଯେଉଁ ପ୍ରଚାର କରାଯାଉଛି, ତାହା ଭୂଲ ଅଟେ ।

## ଜନଗଣଙ୍କ ଖାଦ୍ୟ ସୁରକ୍ଷାକୁ ବିପନ୍ନ କରିବ

ଏହି ଆଇନରେ ସଂଶୋଧନ ପଛରେ କେନ୍ଦ୍ର ସରକାରଙ୍କ ଆଉ ଏକ ଯୁକ୍ତି ହେଲା ଯେ ୬୫ ବର୍ଷ ତଳେ ତତ୍କାଳିନ ପରିସ୍ଥିତିକୁ ନେଇ ତିଆରି ହୋଇଥିବା ଏହି ଆଇନର ବର୍ତ୍ତମାନ କୌଣସି ଆବଶ୍ୟକତା ନାହିଁ । ୧୯୫୫ ମସିହାରେ ଏହି ଆଇନର ପ୍ରଣୟନ ସମୟରେ ଦେଶର ଲୋକସଂଖ୍ୟା ୩୬-୩୭ କୋଟି ଥିଲା ବେଳେ ଦେଶରେ ଧାନ ଓ ଗହମର ମୋଟ ଉତ୍ପାଦନ ଯଥାକ୍ରମେ ୨୫୦ ଲକ୍ଷ ଏବଂ ୧୦୦ ଲକ୍ଷ ଟନ୍ ରହିଥିଲା । କିନ୍ତୁ ଆଜି ଦେଶରେ ଧାନ ଓ ଗହମର ଉତ୍ପାଦନ ବୃଦ୍ଧି ପାଇ ଯଥାକ୍ରମେ ୧୧୦୦ ଲକ୍ଷ ଓ ୧୦୦୦ ଲକ୍ଷ ଟନ୍‌ରେ ପହଂଚି ଥିବାରୁ ବଜାରରେ ଖାଦ୍ୟଶସ୍ୟର ସଙ୍କଟ ରହିନାହିଁ । ତେବେ ସରକାରଙ୍କ ଏଭଳି ଯୁକ୍ତି ବି ହାସ୍ୟାସ୍ପଦ ମନେହୁଏ । କାରଣ ଗତ ୬୫ ବର୍ଷ ମଧ୍ୟରେ ଦେଶରେ ଧାନ ଗହମ ପରି ଖାଦ୍ୟ ଶସ୍ୟର ଉତ୍ପାଦନରେ ତ ବୃଦ୍ଧି ହୋଇଛି ସତ କିନ୍ତୁ ତା ସହିତ ଦେଶର ଜନସଂଖ୍ୟାରେ ମଧ୍ୟ ୩.୫ ଗୁଣ ବୃଦ୍ଧି ପାଇ ୧୩୫ କୋଟିରେ ପହଂଚିଛି । ଏହା ବ୍ୟତିତ କେବଳ ଧାନ ଓ ଗହମକୁ ଛାଡ଼ିଦେଲେ ଆମ ଦେଶ ଖାଇବା ତେଲ, ଡ଼ାଲି ପରି ଅନେକ ଅତ୍ୟାବଶ୍ୟକ ଉତ୍ପାଦରେ ଆତ୍ମ ନିର୍ଭରଶୀଳ ହୋଇ ପାରିନି ।

ଆମର ଖାଇବା ତେଲର ସିଂହ ଭାଗ ବିଦେଶରୁ ଆମଦାନୀ ହେଉଛି । ଅତଏବ ଦେଶରେ ଖାଦ୍ୟଶସ୍ୟର ସଙ୍କଟ ନାହିଁ କହି ସେସବୁର ବଜାରକୁ କମ୍ପାନୀଙ୍କ ଦୟାରେ ଛାଡ଼ିଦେବା ବିପଜ୍ଜନକ ହେବ ।

ପୁନଶ୍ଚ ଖାଦ୍ୟଶସ୍ୟର ଉତ୍ପାଦନରେ ବୃଦ୍ଧି ହେବା ଲୋକଙ୍କୁ ତାହା ଉପଲବ୍ଧତାର ଗ୍ୟାରେଣ୍ଟି ନୁହେଁ । ଗତ କିଛି ବର୍ଷ ଧରି ଦେଶରେ ଖାଦ୍ୟଶସ୍ୟର ବିପୁଳ ଉତ୍ପାଦନ ସତ୍ତ୍ୱେ ସଂଖ୍ୟା ଗରିଷ୍ଠ ଜନତା ନିଜର ବଂଚିବା ପାଇଁ ଆବଶ୍ୟକୀୟ ଖାଦ୍ୟଶସ୍ୟ ନପାଇ ଅର୍ଦ୍ଧାହାର, ଅନାହାର ଓ ପୁଷ୍ଟିହୀନତାର ଶୀକାର ହେଉଛନ୍ତି । ଏପରିକି ଗ୍ରାମାଂଚଳର ୭୫% ଏବଂ ସହରାଂଚଳର ୫୦% ଲୋକଙ୍କ ଖାଦ୍ୟ ସୁରକ୍ଷା ବିପନ୍ନ ହୋଇଥିବା କାରଣରୁ ଖୋଦ୍ ସରକାର ଦେଶରେ ଖାଦ୍ୟ ସୁରକ୍ଷା ଆଇନ କରିଛନ୍ତି । ଏହାର ଅର୍ଥ ହେଲା ଦେଶର ଏତେ ସଂଖ୍ୟକ ଲୋକ ବଜାରରୁ ପଇସା ଦେଇ ନିଜର ଆବଶ୍ୟକୀୟ ଖାଦ୍ୟଶସ୍ୟ କିଣିବାକୁ ସକ୍ଷମ ନୁହଁନ୍ତି । ତେବେ ଏହି ଆଇନ ବଳରେ ଯଦିଓ ସରକାର ପ୍ରତ୍ୟେକ ହୀତାଧିକାରୀଙ୍କୁ ପ୍ରତି ମାସରେ ଚାଉଳ କିମ୍ବା ଗହମ ଯୋଗାଉଛନ୍ତି କିନ୍ତୁ ତାହା ସେମାନଙ୍କ ଆବଶ୍ୟକତା ଠାରୁ ବହୁତ କମ୍ । ଏପରିକି ଖୋଦ କେନ୍ଦ୍ର ସରକାରଙ୍କ ଆଇସିଏମ୍ଆର୍ ସଂସ୍ଥାର ମତ ଅନୁଯାୟୀ ଜଣେ ପ୍ରାପ୍ତ ବୟସ୍କ ବ୍ୟକ୍ତିର ଶରୀରର ଆବଶ୍ୟକତା ପାଇଁ ମାସିକ ୧୫ କିଲୋ ଖାଦ୍ୟଶସ୍ୟ ଦରକାର ପଡୁଥିବା ବେଳେ ସରକାରଙ୍କ ଖାଦ୍ୟ ସୁରକ୍ଷା ଯୋଜନାରେ ବ୍ୟକ୍ତି ପିଛା ମାତ୍ର ପାଞ୍ଚ କିଲୋ ଖାଦ୍ୟଶସ୍ୟ ହିଁ ମିଳୁଛି ।

## ଦ୍ୱିତୀୟ କୃଷି ଆଇନ : ସରକାରୀ ମଣ୍ଡି ବ୍ୟବସ୍ଥା ଓ ଏମ୍ଏସ୍‌ପିର ମୃତ୍ୟୁଘଣ୍ଟି

'କୃଷି ଉତ୍ପାଦ ବ୍ୟବସାୟ ଓ ବାଣିଜ୍ୟ (ପ୍ରୋତ୍ସାହନ ଓ ସୁଗମୀକରଣ) ଆଇନ – ୨୦୨୦' ନାଁରେ ସରକାର ପୂର୍ବରୁ ରହିଥିବା କୃଷି ଉତ୍ପାଦ ବିପଣନ କମିଟି (ଏପିଏମ୍‌ସି) ବା ମଣ୍ଡି ଆଇନ ପରିବର୍ତ୍ତେ ଏକ ନୂତନ ଆଇନ ପ୍ରଣୟନ କରିଛନ୍ତି । ଏହାଦ୍ୱାରା ଦେଶରେ କୃଷିଜାତ ଦ୍ରବ୍ୟର ସଂଗ୍ରହ ଓ ବିକ୍ରି କ୍ଷେତ୍ରରେ ଘରୋଇ କମ୍ପାନୀଙ୍କ ପାଇଁ ପୂର୍ବରୁ ରହିଥିବା ସମସ୍ତ ସରକାରୀ ପ୍ରତିବନ୍ଧକକୁ ହଟାଇ ଦିଆଯାଇଛି । ଏହି ଆଇନ ଫଳରେ ଚାଷୀ ଏଣିକି ତାର ଫସଲକୁ ଦେଶର ଯେକୌଣସି ସ୍ଥାନରେ ବିକ୍ରି

କରିପାରିବ, ସରକାରୀ ଘୋଷିତ ସର୍ବନିମ୍ନ ମୂଲ୍ୟର ବନ୍ଧନରୁ ମୁକ୍ତ ହୋଇ ଫସଲର ଅଧିକ ଦାମ୍ ପାଇବ, ଏକାଧିକ ଘରୋଇ କମ୍ପାନୀ ଆସିବା ଫଳରେ ପ୍ରତିଯୋଗୀତା ବୃଦ୍ଧି ପାଇ ଚାଷୀର ଫସଲକୁ ଅଧିକ ଦର ଦେଇ କିଣିବେ ଆଦି ମନଗଢ଼ା ଯୁକ୍ତି ସବୁ ସରକାରଙ୍କ ପକ୍ଷରୁ କରାଯାଉଛି । କିନ୍ତୁ ନୂତନ ଆଇନରେ ଚାଷୀଙ୍କୁ ସ୍ୱାଧୀନତା ଦିଆଯାଇଛି ନା ଚାଷୀଙ୍କ ସୁରକ୍ଷା ପାଇଁ ରହିଥିବା ସମସ୍ତ ସରକାରୀ ନିୟନ୍ତ୍ରଣ ହଟାଇ କମ୍ପାନୀମାନଙ୍କୁ ଲୁଟିବାର ସ୍ୱାଧୀନତା ଦିଆଯାଇଛି, ତାହା ଜାଣିବାର ଆବଶ୍ୟକତା ରହିଛି ।

ପୂର୍ବରୁ ସରକାରୀ ମଣ୍ଡିରେ ହିଁ ଆଇନଗତ ଭାବେ ଚାଷୀର କୃଷି ଉତ୍ପାଦ କ୍ରୟ ବିକ୍ରୟ ହେଉଥିଲା । ଯଦିଓ ଦେଶର ଅଧିକାଂଶ କୃଷିଜାତ ଦ୍ରବ୍ୟର ବିକାକିଣା ମଣ୍ଡି ବାହାରେ ହିଁ ହେଉଥିଲା, କିନ୍ତୁ ବଡ଼ କମ୍ପାନୀମାନେ ମଣ୍ଡି ବାହାରେ ଚାଷୀଙ୍କ ଠାରୁ ସିଧାସଳଖ କିଣିବା ଉପରେ କଟକଣା ରହିଥିଲା । ଦେଶରେ ସରକାରୀ ମଣ୍ଡି ବ୍ୟବସ୍ଥା ବ୍ୟାପକ ଓ ଯଥେଷ୍ଟ ନଥିବାରୁ ଅଧିକାଂଶ ଚାଷୀ ନିଜର ଉତ୍ପାଦିତ ଫସଲକୁ ମଣ୍ଡି ବାହାରେ କମ୍ ଦରରେ ବେପାରୀଙ୍କୁ ବିକ୍ରି କରିବାକୁ ବାଧ୍ୟ ହେଉଥିଲେ । ସରକାରୀ ନିୟନ୍ତ୍ରଣ ଯୋଗୁଁ ଚାଷୀ ମଣ୍ଡିରେ ହିଁ ନିଜ ଫସଲର ଅଧିକ ଦାମ୍ ପାଇ ପାରୁଥିଲେ । କିନ୍ତୁ ନୂଆ ଆଇନ ବଳରେ ଏଣିକି ଘରୋଇ କମ୍ପାନୀ ବା ବ୍ୟବସାୟୀମାନେ ସରକାରୀ ମଣ୍ଡି ବାହାରେ ଘରୋଇ ମଣ୍ଡି ଖୋଲି ଅଥବା ସିଧାସଳଖ ଚାଷୀଙ୍କ ଠାରୁ ସେମାନଙ୍କ କୃଷି ଉତ୍ପାଦକୁ କିଣିପାରିବେ । ଘରୋଇ କମ୍ପାନୀ ବା ବ୍ୟବସାୟୀଙ୍କ ଏହି କିଣାବିକାରେ ସରକାରଙ୍କ କୌଣସି ପ୍ରକାର ହସ୍ତକ୍ଷେପ ରହିବନି । ମଣ୍ଡିରେ ଚାଷୀଙ୍କ ଠାରୁ କିଣିବାକୁ ଆସୁଥିବା ବେପାରୀ ଓ କମ୍ପାନୀମାନେ ପଞ୍ଜିକୃତ ହେଉଥିବା ବେଳେ ମଣ୍ଡି ବାହାରେ ଘରୋଇ କମ୍ପାନୀଙ୍କ କିଣାବିକାରେ କ୍ରେତା କିମ୍ବା ବିକ୍ରେତା କାହାରି ବି ପଞ୍ଜିକରଣ କିମ୍ବା କୌଣସି ବିଧିବଦ୍ଧ ହିସାବ କିତାବ ରହିବନି । ପୂର୍ବ ଆଇନ ପ୍ରକାରେ ଚାଷୀ, ସରକାରୀ ମଣ୍ଡିରେ ନିଜର ଉତ୍ପାଦକୁ ବିକ୍ରି କରି ସରକାରଙ୍କ ଘୋଷିତ ଏମ୍ଏସ୍ପି ହିସାବରେ ଦାମ୍ ପାଉଥିବା ବେଳେ ବର୍ତ୍ତମାନ ଘରୋଇ କମ୍ପାନୀମାନେ ମଣ୍ଡି ବାହାରେ କୃଷକଙ୍କ ଉତ୍ପାଦକୁ କିଣିବାର ଅଧିକାର ପାଇବା ସହିତ ସେଥିପାଇଁ ଏମ୍ଏସ୍ପି ଦେବାକୁ ବାଧ୍ୟ ନୁହଁନ୍ତି । କମ୍ପାନୀମାନେ ଏଣିକି କୃଷିଜାତ

ଦ୍ରବ୍ୟର କ୍ରୟ ବେଳେ ସରକାରଙ୍କୁ ଟିକସ ଦେବେନି କି କୃଷକଙ୍କୁ ଏମ୍ଏସ୍‌ପି ବି ଦେବେ ନାହିଁ। ସରକାରୀ ମଣ୍ଡି ବାହାରେ ସରକାରଙ୍କ ନିୟନ୍ତ୍ରଣ ବିନା କୃଷି ଉତ୍ପାଦର କିଣାବିକା ପାଇଁ ଏଭଳି ଅନୁମତି ଦେଇ ସରକାର କାହାର ଲାଭ କରିବାକୁ ଯାଉଛନ୍ତି, ତାହା ସ୍ପଷ୍ଟ ଭାବେ ବୁଝି ହେଉଛି।

ମଣ୍ଡି ଆଇନରେ ପରିବର୍ତ୍ତନ ନେଇ ସରକାରଙ୍କ ଆଉ ଏକ ଯୁକ୍ତି ହେଲା, ବର୍ତ୍ତମାନ ଚାଷୀ ମଣ୍ଡି ବାହାରେ ତାର ଉତ୍ପାଦକୁ ବିକ୍ରୀ କରିବା ସମ୍ଭବ ହେଉନି। ନୂଆ ଆଇନ ଫଳରେ ଚାଷୀ ନିଜର ଉତ୍ପାଦକୁ ଦେଶର ଯେକୌଣସି ସ୍ଥାନରେ ବି ବିକ୍ରୀ କରିବାକୁ ଅଧିକାର ପାଇବ। ପ୍ରଥମ କଥା ହେଲା, ସରକାରଙ୍କ ଏହଭଳି ପ୍ରଚାର ଭିତ୍ତିହୀନ ଅଟେ। କାରଣ ବର୍ତ୍ତମାନ ବି ଚାଷୀଙ୍କ ଉତ୍ପାଦିତ ଅଧିକାଂଶ ଫସଲ ମଣ୍ଡି ବାହାରେ ହିଁ ବିକ୍ରି ହେଉଛି। ଖୋଦ ସରକାରଙ୍କ ତଥ୍ୟ ଅନୁଯାୟୀ ଦେଶର ମୋଟ ଧାନର ୨୯% ଓ ଗହମ ଫସଲର ୪୪% ହିଁ କେବଳ ସରକାରୀ ମଣ୍ଡିରେ ବିକ୍ରୀ ହେଉଛି। ୪୯% ଧାନ ଏବଂ ୩୬% ଗହମକୁ ଚାଷୀ ସ୍ଥାନୀୟ ବେପାରୀଙ୍କୁ ବିକ୍ରି କରୁଥିବା ଜଣାପଡ଼ିଛି। ଦ୍ୱିତୀୟତଃ ଧାନ, ଗହମକୁ ଛାଡ଼ିଦେଲେ ଅଧିକାଂଶ ଫସଲର କିଣାବିକା ପ୍ରାୟତଃ ମଣ୍ଡିରେ ହେଉନାହିଁ ବୋଲି କୁହାଯାଇପାରେ। ଗତ 'ସିଚୁଏସନାଲ ଏସେସମେଣ୍ଟ ସର୍ଭେ'ରେ ମଧ୍ୟ ଯେଉଁ ୩୧ଟି ଫସଲର ସର୍ଭେ କରାଯାଇଛି, ସେଥି ମଧ୍ୟରୁ ୨୯ଟି ଫସଲର ମୁଖ୍ୟ କ୍ରେତା ସ୍ଥାନୀୟ ଘରୋଇ ବେପାରୀ ବୋଲି ଜଣାପଡ଼ିଛି। କିନ୍ତୁ ଦେଶର କୌଣସି ସ୍ଥାନରେ ବି ମଣ୍ଡି ବାହାରେ ହେଉଥିବା କିଣାବିକାରେ ଚାଷୀ ଫସଲର ଲାଭଜନକ ମୂଲ୍ୟ ପାଇବା ଦୂରର କଥା, ସରକାରୀ ଘୋଷିତ ସର୍ବନିମ୍ନ ସହାୟକ ଦର ବି ପାଇବା ଦେଖାଯାଇନି।

ଚାଷୀ ଏଥର ଦେଶର ଯେକୌଣସି ସ୍ଥାନରେ ବି ନିଜର ଉତ୍ପାଦକୁ ବିକ୍ରୀ କରିପାରିବ ବୋଲି ସରକାରଙ୍କ ପ୍ରଚାରଟି ହାସ୍ୟାସ୍ପଦ ମନେହୁଏ। କାରଣ ଦେଶର ୮୬% ଚାଷୀ, କ୍ଷୁଦ୍ର ଓ ନାମମାତ୍ର ଶ୍ରେଣୀର ଅଟନ୍ତି ଏବଂ ସେମାନଙ୍କ ପକ୍ଷରେ ନିଜର ଉତ୍ପାଦକୁ ନିକଟବର୍ତ୍ତୀ ମଣ୍ଡିରେ ଯାଇ ବିକ୍ରୀ କରିବା ବି ଅନେକ ସମୟରେ ସମ୍ଭବ ହୋଇ ନଥାଏ। ସେଭଳି ପରିସ୍ଥିତିରେ ସେମାନେ ଅନ୍ୟ ରାଜ୍ୟକୁ ଯାଇ ନିଜର ଉତ୍ପାଦକୁ ବିକ୍ରି କରିବା କଥାଟି ଅବାନ୍ତର ମନେହୁଏ। ଓଡ଼ିଶା କିମ୍ବା ବିହାରର

ଚାଷୀ ତାର ଉତ୍ପାଦକୁ ନେଇ ଦିଲ୍ଲୀ, ମୁମ୍ବାଇ, ବାଙ୍ଗଲୋରରେ ଯାଇ ବିକ୍ରି କରିବ, ତାହା ଶୁଣିବାକୁ ତ ଭଲ ଲାଗୁଛି, କିନ୍ତୁ ନିହାତି ଅବାସ୍ତବ ମନେହୁଏ । ବରଂ କୃଷି ଉତ୍ପାଦକୁ ଦେଶର ବିଭିନ୍ନ ସ୍ଥାନରେ ବିକ୍ରୀ କରିବାକୁ କେବଳ ବଡ ବଡ ବ୍ୟବସାୟୀ ବା କମ୍ପାନୀମାନେ ହିଁ ସମର୍ଥ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ସେମାନେ ଫସଲ ଅମଳ ପରେ ଚାଷୀ ଠାରୁ ଶସ୍ତାରେ ତାର ଉତ୍ପାଦକୁ କିଣି ଦୂର ସହରରେ ଏପରିକି ବିଦେଶୀ ବଜାରରେ ବି ବିକ୍ରି କରି ଅଧିକ ମୁନାଫା ହାସଲ କରିବାକୁ ସକ୍ଷମ ଅଟନ୍ତି । ଅନ୍ୟପଟେ ନିଜର କୃଷି ଉତ୍ପାଦକୁ ଅଧିକ ଦିନ ଗଚ୍ଛିତ କରି ରଖିବା ପାଇଁ ଆବଶ୍ୟକୀୟ ସରକାରୀ ଗୋଦାମ ବା ଶୀତଳ ଭଣ୍ଡାରର ସୁବିଧା ନଥିବାରୁ ତଥା ଆଗାମୀ ଫସଲ ପାଇଁ ମଧ୍ୟ ପ୍ରସ୍ତୁତ ହେବାକୁ ପଡୁଥିବାରୁ ଏବଂ ଫସଲ ପାଇଁ କରିଥିବା ଧାର କରଜକୁ ତୁରନ୍ତ ଶୁଝିବା ଆବଶ୍ୟକ ହେଉଥିବାରୁ ଚାଷୀ ତାର ଉତ୍ପାଦକୁ ଭଲ ଦରରେ ବିକ୍ରି କରିବାକୁ ଅଧିକ ଦିନ ଧରି ଅପେକ୍ଷା କରିବା ସମ୍ଭବ ହୋଇ ନଥାଏ । ଏଭଳି ପରିସ୍ଥିତିରେ ସରକାରଙ୍କ ନୂଆ ବ୍ୟବସ୍ଥାର ସୁଯୋଗ ଚାଷୀ ନୁହଁନ୍ତି ବରଂ କମ୍ପାନୀମାନେ ହିଁ ସହଜରେ ନେଇପାରିବେ, ଏଥିରେ ସନ୍ଦେହ ନାହିଁ। ସେମାନେ ନିଜର ବିପୁଳ ପୁଞ୍ଜି ବଳରେ ସାରା ଦେଶରୁ ବିନା ପ୍ରତିବନ୍ଧକରେ ଶସ୍ତାରେ କୃଷି ଉତ୍ପାଦକୁ ସଂଗ୍ରହ କରିବା ସହ ତାକୁ ନିଜର ଗୋଦାମରେ ମାସ ମାସ ଧରି ଜମା ରଖି, ଶେଷରେ ଅଧିକ ଦରରେ ବିକ୍ରି କରି ବିପୁଳ ମୁନାଫା କମାଇ ପାରିବେ । ଅତଏବ କୃଷି ଉତ୍ପାଦକୁ ବିକ୍ରି କରିବାର ଏହି ସ୍ୱାଧୀନତାଟି ଯେ ଚାଷୀଙ୍କ ପାଇଁ ନୁହେଁ ବରଂ କମ୍ପାନୀ ଓ ବଡ଼ ବ୍ୟବସାୟୀଙ୍କ ପାଇଁ ଉଦ୍ଦିଷ୍ଟ ଏକଥା ସ୍ପଷ୍ଟ ବୁଝି ହେଉଛି ।

## ନୂଆ ଆଇନ ଫଳରେ ସରକାରୀ ମଣ୍ଡି ବ୍ୟବସ୍ଥା ସମାପ୍ତ ହୋଇଯିବ

ମଣ୍ଡି ବ୍ୟବସ୍ଥାରେ ସଂସ୍କାର ଆଣିବା ପାଇଁ ଅତିତରେ ଚାଷୀମାନେ ଦାବୀ କରିଥିଲେ ଏବଂ ଆମ ସରକାର ମଧ୍ୟ ଗତ ଛଅ ବର୍ଷରେ ଏ ଦିଗରେ ଅନେକ ସଂସ୍କାର କରିଛନ୍ତି ତଥା ନୂଆ ଆଇନ ଫଳରେ ଦେଶରେ ମଣ୍ଡି ବ୍ୟବସ୍ଥାରେ ସଂସ୍କାର ହେବ ବୋଲି ପ୍ରଧାନମନ୍ତ୍ରୀ କହିଛନ୍ତି । ଏହା ସତ ଯେ ଦେଶର ମଣ୍ଡି ବ୍ୟବସ୍ଥାରେ

ସଂସ୍କାର ଆଣି ତାକୁ ଶକ୍ତିଶାଳୀ କରିବା ପାଇଁ ଚାଷୀ ସଙ୍ଗଠନମାନେ ଆଗରୁ ଦାବୀ କରି ଆସିଛନ୍ତି। କିନ୍ତୁ ମଣ୍ଡି ବ୍ୟବସ୍ଥାରେ ଏହି ସଂସ୍କାରର ଅର୍ଥ ହେଉଛି, ମଣ୍ଡିର ଭଣ୍ଡାରଣ କ୍ଷମତାକୁ ବଢ଼ାଇବା, ଭିତ୍ତିଭୂମିର ବିକାଶ କରିବା, ଚାଷୀଙ୍କ ସମସ୍ତ ଫସଲକୁ କ୍ରୟ କରିବାକୁ ନିଶ୍ଚିତ କରିବା, ଖାଦ୍ୟଶସ୍ୟର ପରିବହନ କ୍ଷମତାକୁ ବଢ଼ାଇବା, ଅଧିକ ସଂଖ୍ୟକ ମଣ୍ଡି ଖୋଲିବା, ଗାଁରୁ ମଣ୍ଡିକୁ ଭଲ ରାସ୍ତା ନିର୍ମାଣ କରିବା ଇତ୍ୟାଦି। କିନ୍ତୁ ମୋଦି ସରକାର ସେସବୁ କରିବା ବଦଳରେ ଗତ ଛଅ ବର୍ଷ ମଧ୍ୟରେ ମଣ୍ଡି ସଂସ୍କାର ନାଁରେ କେବଳ ମଣ୍ଡିମାନଙ୍କର କମ୍ପ୍ୟୁଟରକରଣ ଓ ଇ-ନାମ୍ ସହିତ ଯୋଡ଼ିବା ଦିଗରେ କିଛି ମାତ୍ର କାମ କରିଛନ୍ତି, ଯାହାକି ଚାଷୀମାନଙ୍କ ମୂଳ ଦାବୀ କଦାପି ନଥିଲା। ବର୍ତ୍ତମାନ କୃଷି ସଂସ୍କାର ନାଁରେ ସରକାର ଯେଉଁ ନୂଆ ଆଇନ ଆଣିଛନ୍ତି, ସେଥିରେ ମଣ୍ଡିର ସଂସ୍କାର କରିବେ କ'ଣ ସମ୍ପୂର୍ଣ୍ଣ ମଣ୍ଡି ବ୍ୟବସ୍ଥାକୁ ହିଁ ସମାପ୍ତ କରିଦେଇ ଚାଷୀଙ୍କୁ କର୍ପୋରେଟଙ୍କ ଦୟାରେ ଛାଡ଼ିଦେବାକୁ ବସିଛନ୍ତି।

ନୂଆ ଆଇନ ଫଳରେ ବଡ଼ କମ୍ପାନୀମାନେ ସରକାରୀ ପ୍ରୋତ୍ସାହନ ପାଇ ସରକାରୀ ମଣ୍ଡିର ସମାନ୍ତରାଳ ଭାବେ ନିଜର ମଣ୍ଡି ଖୋଲିଲେ, ସରକାରୀ ମଣ୍ଡି ବ୍ୟବସ୍ଥାର ସମାପ୍ତି ଘଟିବ ବୋଲି କୃଷକମାନଙ୍କ ଯେଉଁ ଆଶଙ୍କା ସୃଷ୍ଟି ହୋଇଛି ତା'କୁ ପ୍ରଧାନମନ୍ତ୍ରୀ ଖଣ୍ଡନ କରିବା ଦେଖାଯାଇଛି। କିନ୍ତୁ କୃଷକମାନଙ୍କ ଆଶଙ୍କା ପଛରେ ଯେ ସତ୍ୟତା ରହିଛି, ଏହା ସରକାରଙ୍କ ନୀତିରୁ ହିଁ ସ୍ପଷ୍ଟ ହୋଇଯାଉଛି। ଅତିତରେ ସରକାର ସଂସଦରେ ଅନେକ ବାର ମଣ୍ଡି ବ୍ୟବସ୍ଥାର ସମାପ୍ତି ନେଇ ଯୁକ୍ତି କରି ଆସିଛନ୍ତି। ସରକାରଙ୍କ ଦ୍ୱାରା ଗଠିତ ଶାନ୍ତାକୁମାର କମିଟି ବି ନିଜର ରିପୋର୍ଟରେ ମଣ୍ଡି ଓ ସରକାରୀ ସଂଗ୍ରହ ବ୍ୟବସ୍ଥାକୁ ସମାପ୍ତ କରିଦେବାକୁ ପରାମର୍ଶ ଦେଇଛନ୍ତି। ଏଠାରେ ପ୍ରଶ୍ନ ଉଠେ, ଯଦି ସରକାରଙ୍କ ଉଦ୍ଦେଶ୍ୟଟି ବର୍ତ୍ତମାନର ସରକାରୀ ମଣ୍ଡି ବ୍ୟବସ୍ଥାକୁ ଦୁର୍ବଳ ବା ସମାପ୍ତ କରିବା ନଥାନ୍ତା ତାହେଲେ ସରକାରୀ ମଣ୍ଡିକୁ ଅଧିକ ଶକ୍ତିଶାଳୀ କରିବାକୁ ପଦକ୍ଷେପ ନେବା ପରିବର୍ତ୍ତେ ସରକାର ସମାନ୍ତରାଳ ଭାବେ ଘରୋଇ ମଣ୍ଡି ଖୋଲିବାକୁ ନୂଆ ଆଇନରେ ଅନୁମତି ଦେଲେ କାହିଁକି ? ପୁଣି କୃଷିଜାତ ଦ୍ରବ୍ୟର କିଣାବିକାରେ ଘରୋଇ କ୍ଷେତ୍ରକୁ ପ୍ରୋତ୍ସାହନ ଦେବାକୁ ଆଇନରେ ସ୍ପଷ୍ଟ ଭାବେ କୁହାଯିବା ସହ ଘରୋଇ ମଣ୍ଡିରେ କିଣାବିକା ଉପରେ ଘରୋଇ

କମ୍ପାନୀମାନଙ୍କୁ ସମସ୍ତ ପ୍ରକାର ଟିକସ ଓ ଅନ୍ୟାନ୍ୟ ରିହାତି ପ୍ରଦାନ କରିବା କ'ଣ ସୂଚାଉଛି ?

## ଗୋଟିଏ ଦେଶ, ଗୋଟିଏ ବଜାର ନୁହେଁ ବରଂ ଦୁଇଟି ବଜାର

ମଜାର କଥା ହେଲା, 'ଗୋଟିଏ ଦେଶ, ଗୋଟିଏ ବଜାର'ର ସ୍ଲୋଗାନ ଦେଇ କୃଷି ସଂସ୍କାରର କଥା କହୁଥିବା ସରକାର ଏବେ ବାସ୍ତବରେ ଦେଶରେ ଦୁଇଟି ବଜାର ସୃଷ୍ଟି କରିବାକୁ ଯାଉଛନ୍ତି । ନୂଆ ଆଇନ ଫଳରେ ଯେତେବେଳେ ନିୟନ୍ତ୍ରିତ ସରକାରୀ ମଣ୍ଡି ବାହାରେ ଘରୋଇ କମ୍ପାନୀମାନେ କୃଷି ଉତ୍ପାଦକୁ କିଣିବାକୁ ସୁଯୋଗ ପାଇବେ ଅଥବା ସମାନ୍ତରାଳ ଭାବେ ଅନିୟନ୍ତ୍ରିତ ଘରୋଇ ମଣ୍ଡିସବୁ ଗଢ଼ି ଉଠିବ, ସେତେବେଳେ ଦେଶରେ ଗୋଟିଏ ବଜାର ନୁହେଁ ବରଂ ଦୁଇଟି ବଜାର ସୃଷ୍ଟିହେବ । ଏହି ଦୁଇ ପ୍ରକାରର ବଜାରରେ ଦୁଇ ପ୍ରକାରର ନିୟମ ଲାଗୁହେବ । ସରକାରୀ ମଣ୍ଡିରେ କ୍ରେତା, ବିକ୍ରେତା ଉଭୟ ପଞ୍ଜୀକୃତ ହେବା ବେଳେ ଘରୋଇ ବଜାରରେ କୌଣସି ପ୍ରକାର ପଞ୍ଜୀକରଣ, ନୀତି ନିୟମ ରହିବନି । ସରକାରୀ ମଣ୍ଡିରେ ଉତ୍ପାଦର କ୍ରୟ ବିକ୍ରୟ ଉପରେ ଟିକସ ଲାଗିବ ଅଥଚ ମଣ୍ଡି ବାହାରେ ଘରୋଇ କମ୍ପାନୀଙ୍କ କିଣାବିକା ସମ୍ପୂର୍ଣ୍ଣ ଟିକସମୁକ୍ତ ରହିବ । ଆଇନ ମୁତାବକ ମଣ୍ଡି ବାହାରେ ସରକାର ଘରୋଇ କମ୍ପାନୀଙ୍କ ଠାରୁ କୌଣସି ପ୍ରକାର ବଜାର ଫି, ଲେଭି ଅଥବା ସେସ୍ ଆଦାୟ କରିବେନି । ସରକାରୀ ମଣ୍ଡିରେ ନିଜର ଉତ୍ପାଦ ପାଇଁ କୃଷକ ଏମ୍‌ଏସ୍‌ପି ପାଇବାକୁ ବାଧ ହୋଇଥିବା ବେଳେ ମଣ୍ଡି ବାହାରେ କମ୍ପାନୀ ଫସଲର କେତେ ମୂଲ୍ୟଦେବ, ତା ଉପରେ ସରକାରଙ୍କ କୌଣସି ନିୟନ୍ତ୍ରଣ ରହିବନି । ସରକାରୀ ମଣ୍ଡିରେ କ୍ରେତା ଓ ବିକ୍ରେତା ମଧ୍ୟରେ କୌଣସି ବିବାଦ ଉପୁଜିଲେ ସମାଧାନର ଏକ ପ୍ରକ୍ରୀୟା ରହିଥିବା ବେଳେ ଘରୋଇ କମ୍ପାନୀଙ୍କ ଅନିୟନ୍ତ୍ରିତ ବଜାରରେ ସମାଧାନର କୌଣସି ବ୍ୟବସ୍ଥା ନଥିବାରୁ ଚାଷୀ ପ୍ରତାରିତ ହେବେ । ଫସଲର ଓଜନ, ମାନ, ଆଦ୍ରତାର ପରିମାଣର ଆଧାରରେ ତାର ଦାମ୍ ନିର୍ଦ୍ଧାରଣ କଲାବେଳେ ଚାଷୀ ଶୋଷଣର ଶୀକାର ହେବେ ।

## ମଣ୍ଡିରେ ନିଆଯାଉଥିବା ଫି, କୃଷକଙ୍କ ଠାରୁ ନୁହେଁ

ସରକାରୀ ମଣ୍ଡିରେ କୃଷି ଉତ୍ପାଦର କିଣାବିକା ବେଳେ ସରକାର ମଣ୍ଡି ଫି, ସେସ୍ ବା ଲେଭି ଆଦାୟ କରିଥାନ୍ତି । ନୂଆ ଆଇନ ଫଳରେ ମଣ୍ଡି ବାହାରେ କିଣାବିକାକୁ ସମ୍ପୂର୍ଣ୍ଣ ଫି-ମୁକ୍ତ କରାଯାଇଥିବାରୁ, ଏହାଦ୍ୱାରା ଚାଷୀମାନେ ଲାଭାନ୍ୱିତ ହେବେ ବୋଲି ସରକାରଙ୍କ ପକ୍ଷରୁ କୁହାଯାଉଛି । ତେବେ ଏଭଳି ପ୍ରଚାରରେ କେତେ ସତ୍ୟତା ରହିଛି, ତାକୁ ଜାଣିବା ଦରକାର ।

ପ୍ରଥମ କଥା ହେଲା, ମଣ୍ଡିରେ କୃଷି ଉତ୍ପାଦର କିଣାବିକାରେ ସରକାର ଯେଉଁ ଫି ଆଦାୟ କରିଥାନ୍ତି, ତାହା କୃଷକମାନଙ୍କ ଠାରୁ ନୁହେଁ ବରଂ କ୍ରେତା ଅର୍ଥାତ୍ ବେପାରୀ ଓ କମ୍ପାନୀମାନଙ୍କ ଠାରୁ ହିଁ ନିଆଯାଇଥାଏ । କ୍ରେତାମାନେ ମଣ୍ଡିରେ କୃଷକଙ୍କୁ ସେମାନଙ୍କ ଫସଲର ଏମଏସ୍‌ପି ଦେବା ପରେ ଯାଇ ଅତିରିକ୍ତ ଭାବେ ଏହିସବୁ ଫି ଓ ସେସ୍ ଦେବାକୁ ପଡୁଥିଲା । ଦ୍ୱିତୀୟତଃ ଏହା ଏକ ନ୍ୟାୟସଙ୍ଗତ ଦେୟ ଯାହାକୁ ମଣ୍ଡିର ବିକାଶ ପାଇଁ ଆଦାୟ କରିବା ଜରୁରୀ ବୋଲି ଖୋଦ୍ ସ୍ୱାମୀନାଥନ୍ କମିଶନ ମଧ୍ୟ ସୁପାରିଶ କରିଥିଲେ । ଏହି ସୁପାରିଶର ଆଧାରରେ ୨୦୦୭ ମସିହାରେ ତତ୍କାଳିନ କେନ୍ଦ୍ର ସରକାର ମଧ୍ୟ ଏକ ମୋଡ଼େଲ୍ ମଣ୍ଡି ଆଇନ ତିଆରି କରି ରାଜ୍ୟମାନଙ୍କ ପାଖକୁ ସେମାନଙ୍କ ମଣ୍ଡି ଆଇନରେ ସଂଶୋଧନ କରିବାକୁ ପଠାଇଥିଲେ । ଆଜି ପର୍ଯ୍ୟନ୍ତ ଦେଶର ୧୬ଟି ରାଜ୍ୟ ନିଜର ମଣ୍ଡି ଆଇନରେ ସଂଶୋଧନ କରିଥିବା ବେଳେ, ଚାରୋଟି ରାଜ୍ୟ ଆଂଶିକ ସଂଶୋଧନ କରିଛନ୍ତି ଏବଂ ଅବଶିଷ୍ଟ ସାତୋଟି ରାଜ୍ୟରେ ମଣ୍ଡି ଆଇନ ହିଁ ନାହିଁ ।

ଭାରତୀୟ ଖାଦ୍ୟ ନିଗମର ତଥ୍ୟ ଅନୁଯାୟୀ ସରକାରୀ ମଣ୍ଡି ରହିଥିବା ଦେଶର ସବୁ ରାଜ୍ୟ ଉଣା ଅଧିକେ ମଣ୍ଡିରେ କୃଷି ଉତ୍ପାଦର କିଣାବିକାରେ ଏଭଳି ଫି ଆଦାୟ କରିବା ଦେଖାଯାଇଛି । ପଞ୍ଜାବରେ ସର୍ବାଧିକ ୮.୫% ନିଆଯାଉଥିବା ବେଳେ ହରିଆନା, କର୍ଣ୍ଣାଟକ, ଉତ୍ତର ପ୍ରଦେଶ, ଓଡ଼ିଶା ଆଦି ରାଜ୍ୟରେ ମଣ୍ଡିମାନଙ୍କରେ ଯଥାକ୍ରମେ ୬.୫%, ୩.୫%, ୨.୫% ଓ ୨% ମଣ୍ଡି ଫି ବାବଦରେ ବେପାରୀଙ୍କ ଠାରୁ ଆଦାୟ କରିଥାନ୍ତି । ସେଥିରୁ ମଣ୍ଡି ଫି ବାବଦ ଅର୍ଥ ମଣ୍ଡିର ରକ୍ଷଣାବେକ୍ଷଣ ଓ ବିକାଶରେ ଖର୍ଚ୍ଚ ହେଉଥିବା ବେଳେ ଓ ଗ୍ରାମ୍ୟ ଉନ୍ନୟନ ଫି

ବାବଦରେ ଆଦାୟ ଅର୍ଥ ଗ୍ରାମାଂଚଳରେ ଭିତ୍ତିଭୂମିର ବିକାଶରେ ଖର୍ଚ୍ଚ ହୋଇଥାଏ। ଅତଏବ ଘରୋଇ ମଣ୍ଡିରେ କମ୍ପାନୀ ବା ବେପାରୀଙ୍କ ଠାରୁ ଏସବୁ ଫି/ସେସ୍ ଆଦାୟ ନକରିବାର ଲାଭଟି କୃଷକମାନଙ୍କୁ ନୁହେଁ ବରଂ ଘରୋଇ ବେପାରୀ ବା କମ୍ପାନୀମାନଙ୍କୁ ହେବ। ନୂଆ ବ୍ୟବସ୍ଥାରେ କୃଷକମାନଙ୍କର ତ କିଛି ଲାଭ ହେବାର ନାହିଁ। ବରଂ ଟିକସ ବା ସେସ୍ ବାବଦରେ ମଣ୍ଡିରୁ ରାଜ୍ୟ ସରକାରମାନେ ପୂର୍ବରୁ ଯାହା ରାଜସ୍ୱ ପାଉଥିଲେ ତାକୁ ହରାଇବେ। ଉଦାହରଣ ସ୍ୱରୂପ ପଞ୍ଜାବ ସରକାର ପ୍ରତିବର୍ଷ ସରକାରୀ ମଣ୍ଡିରେ ହେଉଥିବା ବିଭିନ୍ନ କୃଷିଜାତ ଦ୍ରବ୍ୟର ସଂଗ୍ରହରେ ବଜାର ଫି ଓ ଅନ୍ୟାନ୍ୟ ଟିକସ ବାବଦରେ କ୍ରେତାମାନଙ୍କ ଠାରୁ ପ୍ରାୟ ୪୦୦୦ କୋଟି ଟଙ୍କା ପାଉଥିଲେ, ଯାହାରି ଫଳରେ ସେଠାକାର ଗ୍ରାମାଂଚଳରେ ମଣ୍ଡିକୁ କେନ୍ଦ୍ର କରି ପକ୍କା ରାସ୍ତାର ଜାଲ ବିଛାଯାଇ ପାରିଛି। ନୂଆ ଆଇନ ଅନୁଯାୟୀ ଯଦି ଘରୋଇ କମ୍ପାନୀମାନେ କିଣାବିକା କରନ୍ତି ତାହେଲେ, ରାଜ୍ୟ ସରକାରମାନେ ସେହି ରାଜସ୍ୱକୁ ହରାଇବାକୁ ଯାଉଥିବାରୁ ଅନେକ ରାଜ୍ୟ ସରକାର ମଧ୍ୟ ଏହି ଆଇନରେ ସନ୍ତୁଷ୍ଟ ନୁହଁନ୍ତି।

## ସରକାରୀ ମଣ୍ଡି ବନ୍ଦ ହେବାର ଯୋଜନା

ସବୁଠାରୁ ବଡ଼ କଥା ହେଲା, ଯଦି ଘରୋଇ କମ୍ପାନୀ ବା ବଡ଼ ବ୍ୟବସାୟୀମାନଙ୍କୁ ମଣ୍ଡି ବାହାରେ କୃଷିଜାତ ଦ୍ରବ୍ୟର କ୍ରୟ ବେଳେ କୌଣସି ଟିକସ ବା ଲେଭି ଦେବାକୁ ପଡ଼ିବନି, ତାହେଲେ ସେମାନେ ଆଉ ସରକାରୀ ମଣ୍ଡିକୁ ଯିବେ ବା କାହିଁକି ? ଚାଷୀଙ୍କୁ ଏମ୍‌ଏସ୍‌ପି ଓ ସରକାରଙ୍କୁ ଟିକସ ଦେବାକୁ ପଡୁ ନଥିବାରୁ ଭବିଷ୍ୟତରେ କମ୍ପାନୀ ଓ ବଡ଼ ବ୍ୟବସାୟୀମାନେ ସେମାନଙ୍କ କିଣାବିକା ଆଉ ସରକାରୀ ମଣ୍ଡିରେ ନକରି ଘରୋଇ ମଣ୍ଡିରେ କରିବେ ଏବଂ ଘରୋଇ ସ୍କୁଲ ଆସିବା ପରେ ସରକାରୀ ସ୍କୁଲ ବନ୍ଦ ହେବା ପରି ମଣ୍ଡି ବାହାରେ କିଣାବିକା ବଢ଼ି ଶେଷରେ ସରକାରୀ ମଣ୍ଡି ସବୁ ବି ଧିରେ ଧିରେ ବନ୍ଦ ହୋଇଯିବ। ପୂର୍ବରୁ ଦେଶରେ ସର୍ବନିମ୍ନ ସହାୟକ ଦର ଓ ମଣ୍ଡି ବ୍ୟବସ୍ଥା ଥିବା ସତ୍ତ୍ୱେ ସରକାରଙ୍କ ଆନ୍ତରିକତା ଅଭାବରୁ ଚାଷୀ ନିଜର ଫସଲକୁ ମଣ୍ଡିରେ ବିକ୍ରୀ କରି ନପାରି ଅଭାବୀ ବିକ୍ରୀର ଶୀକାର ହେଉଥିଲେ। ବର୍ତ୍ତମାନ ଏମ୍‌ଏସ୍‌ପି ଓ ସରକାରୀ ମଣ୍ଡି ବ୍ୟବସ୍ଥା ନରହିଲେ

ସେମାନେ ଘରୋଇ ମଣ୍ଡିରେ ନିଜର ଫସଲକୁ କମ୍ପାନୀଙ୍କୁ ଶସ୍ତାରେ ବିକିବାକୁ ବାଧ୍ୟ ହେବେ। ଅତଏବ ନୂଆ ଆଇନ ଦ୍ୱାରା ସରକାର କାହାର ଫାଇଦା କରିବାକୁ ଚାହୁଁଛନ୍ତି, ତାହା ଆଉ ଅଜଣା ହୋଇ ରହିନାହିଁ।

ଚାଷୀକୁ ତାର ଉତ୍ପାଦିତ ଦ୍ରବ୍ୟର ଉପଯୁକ୍ତ ଦର ପାଇବାକୁ ହେଲେ ଏକ ସୁରକ୍ଷିତ ବଜାରର ଆବଶ୍ୟକତା ରହିଛି। ସରକାରଙ୍କ ଦ୍ୱାରା ଘୋଷିତ ଏମ୍‌ଏସ୍‌ପି ଓ ମଣ୍ଡି ବ୍ୟବସ୍ଥା ଚାଷୀକୁ ତାର ଉତ୍ପାଦର ଅପେକ୍ଷାକୃତ ଭଲ ଦର ଦେବାରେ ସହାୟକ ହୋଇ ଆସିଛି। ମଣ୍ଡି ବାହାରେ କିଣାବିକାରେ ଚାଷୀମାନେ ସବୁବେଳେ କମ୍ ଦାମ୍ ପାଇବା ଦେଖାଯାଇଛି। ଦେଶରେ କୃଷକମାନଙ୍କ ଉତ୍ପାଦର ବିକ୍ରୀ ନହେବା, ଉପଯୁକ୍ତ ଦାମ୍ ନମିଳିବା ପଛରେ ସବୁଠାରୁ ବଡ଼ କାରଣ ହେଉଛି ଆବଶ୍ୟକୀୟ ବଜାର ବା ମଣ୍ଡିର ଅଭାବ। ଦେଶରେ ଯେତିକି ସରକାରୀ ମଣ୍ଡି ରହିଛି, ତାହା ଆବଶ୍ୟକତା ଠାରୁ ବହୁତ କମ୍ ଅଟେ। ମଣ୍ଡି ଅଭାବରୁ ସରକାର ଏମ୍‌ଏସ୍‌ପି ଘୋଷଣା କରିଥିବା ଫସଲକୁ ବି ଚାଷୀ ବାହାରେ କମ୍ ଦାମରେ ବିକ୍ରୀ କରିବାକୁ ବାଧ୍ୟ ହେଉଛି। ଦେଶରେ କୃଷିର ବିକାଶ ପାଇଁ ମଣ୍ଡି ବ୍ୟବସ୍ଥାର ଗୁରୁତ୍ୱକୁ ସ୍ୱୀକାର କରି ସ୍ୱାମୀନାଥନ୍ କମିଶନ ମଧ୍ୟ ନିଜ ରିପୋର୍ଟରେ ସ୍ପଷ୍ଟ ଭାବେ କହିଛନ୍ତି ଯେ ଜଣେ ଚାଷି ତାର ଶଗଡ଼ ଗାଡ଼ିରେ ଏକଘଣ୍ଟା ମଧ୍ୟରେ ପହଂଚି ପାରୁଥିବା ଦୂରତା ମଧ୍ୟରେ ମଣ୍ଡି ରହିବା ଦରକାର। ସେଥିଲାଗି ଗୋଟିଏ ମଣ୍ଡିର ହାରାହାରୀ ପରିସୀମାକୁ ୮୦ ବର୍ଗ କି.ମିକୁ ହ୍ରାସ କରିବାକୁ ସେ ସୁପାରିଶ କରିଛନ୍ତି। ୧୨ ଡ଼ିସେମ୍ବର ୨୦୧୯ରେ ପ୍ରକାଶିତ ଲୋକସଭାରେ କୃଷି ମନ୍ତ୍ରଣାଳୟର ସ୍ଥାୟୀ ସମିତିର ରିପୋର୍ଟରେ ମଧ୍ୟ କୁହାଯାଇଛି ଯେ ଦେଶର ପ୍ରତ୍ୟେକ ୫ କି.ମି ବ୍ୟାସାର୍ଦ୍ଧ ବା ୮୦ ବର୍ଗ କି.ମି କ୍ଷେତ୍ରଫଳରେ ଏକ କୃଷି ମଣ୍ଡି ବା କୃଷି ବଜାର ରହିବାର ଆବଶ୍ୟକତା ଥିବା ବେଳେ ପ୍ରତି ୧୨ କି.ମି ବ୍ୟାସାର୍ଦ୍ଧରେ ଅର୍ଥାତ୍ ପ୍ରତି ୪୬୯ ବର୍ଗ କି.ମିରେ ଗୋଟିଏ ଲେଖାଏଁ କୃଷି ବଜାର ରହିଛି। ସେହି ଦୃଷ୍ଟିରୁ ଦେଖିଲେ ଭାରତରେ ବର୍ତ୍ତମାନ ୪୧ ହଜାରଟି ସଂଯୁକ୍ତ କୃଷି ବଜାର ବା ମଣ୍ଡି ରହିବା ଦରକାର ଥିବା ବେଳେ ବର୍ତ୍ତମାନ ମାତ୍ର ୬୬୩୦ଟି ହିଁ ମଣ୍ଡି ରହିଛି (ଡ଼ାଉନ ଟୁ ଆର୍ଥ ୧୩ ମଇ ୨୦୨୦)। ଏଭଳି ପରିସ୍ଥିତିରେ ମୋଦି ସରକାର ବଜେଟ୍‌ରେ

କୃଷି ପାଇଁ ବ୍ୟୟ ବରାଦକୁ ବୃଦ୍ଧି କରି ଅଧିକରୁ ଅଧିକ ମଣ୍ଡି ନିର୍ମାଣ କରିବାକୁ ପଦକ୍ଷେପ ନେବା ଆବଶ୍ୟକ ଥିଲା। କିନ୍ତୁ ନିଜର ଛଅ ବର୍ଷର ଶାସନ କାଳରେ ସରକାର ଗୋଟିଏ ବି କୃଷି ବଜାର ତ ତିଆରି କରି ନାହାନ୍ତି ବରଂ ନୂଆ ଆଇନ ଦ୍ୱାରା ଥିବା ବଜାରକୁ ଭାଙ୍ଗିବାକୁ ଉଦ୍ୟମ କରିଛନ୍ତି। ଆଜି କୃଷକ ଆନ୍ଦୋଳନ ପରିପ୍ରେକ୍ଷୀରେ ସରକାର ଲୋକଙ୍କୁ ବିଭ୍ରାନ୍ତ କରିବା ପାଇଁ ସରକାରୀ ମଣ୍ଡି ସବୁ ପୂର୍ବଭଳି ରହିବ ବୋଲି କହୁଛନ୍ତି। ଏପରିକି ନିକଟରେ ଖୋଦ ପ୍ରଧାନମନ୍ତ୍ରୀ ସରକାରୀ ମଣ୍ଡି ବ୍ୟବସ୍ଥା ଭାରତ ଖାଦ୍ୟ ନିରାପତ୍ତାର ଗ୍ୟାରେଣ୍ଟି ବୋଲି କହିଛନ୍ତି। ତେବେ ପରିତାପର ବିଷୟ, ସରକାରଙ୍କ ନୀତି ତାଙ୍କର ଘୋଷଣାକୁ ପ୍ରତିଫଳିତ କରୁନାହିଁ। ଗତବର୍ଷ ୧୨ ନଭେମ୍ବରରେ ନାବାର୍ଡ଼ ପକ୍ଷରୁ ଆୟୋଜିତ ଏକ ଆର୍ନ୍ତଜାତୀୟ ସମ୍ମିଳନୀରେ ଯୋଗଦେଇ ଅର୍ଥମନ୍ତ୍ରୀ ନିର୍ମଳା ସୀତାରମଣ କହିଥିଲେ ଯେ ଆମେ ରାଜ୍ୟମାନଙ୍କୁ କହୁଛୁ, ସେମାନେ ଏପିଏମ୍‌ସି ମଣ୍ଡିଗୁଡ଼ିକୁ ବିଘଟନ କରିଦିଅନ୍ତୁ ଏବଂ ଇ-ନାମକୁ ଗ୍ରହଣ କରନ୍ତୁ।

## ଚାଷୀଙ୍କୁ ନିଜ ଫସଲର ଅଧିକ ଦାମ୍ ମିଳିବନି

ନୂଆ ଆଇନ ଫଳରେ ଘରୋଇ କମ୍ପାନୀମାନେ ସରକାରୀ ମଣ୍ଡି ବାହାରେ ଚାଷୀଙ୍କ କୃଷି ଉତ୍ପାଦକୁ ସିଧାସଳଖ କିଣିବାକୁ ସୁଯୋଗ ପାଇଲେ ଚାଷୀକୁ ଏମ୍‌ଏସ୍‌ପି ଠାରୁ ବି ଅଧିକ ଦାମ୍ ମିଳିବ ବୋଲି ସରକାର ଯୁକ୍ତି କରୁଛନ୍ତି। ଏଠାରେ ପ୍ରଶ୍ନ ଉଠେ, ଯଦି ଘରୋଇ କମ୍ପାନୀ ଆସିଲେ ସତରେ ଚାଷୀଙ୍କୁ ସରକାରୀ ଘୋଷିତ ଏମ୍‌ଏସ୍‌ପି ଠାରୁ ବି ଅଧିକା ଦାମ୍ ମିଳିବ ବୋଲି ସରକାର ଭାବୁଛନ୍ତି, ତାହେଲେ ସର୍ବନିମ୍ନ ମଜୁରୀ ଆଇନ ପରି ଦେଶରେ କୃଷି ଉତ୍ପାଦର ସଂଗ୍ରହରେ ବି ସରକାରୀ ଘୋଷିତ ସର୍ବନିମ୍ନ ଦର ବା ଏମ୍‌ଏସ୍‌ପି ଦେବାକୁ ବାଧ୍ୟ ବୋଲି ଆଇନଗତ ବ୍ୟବସ୍ଥା କରୁ ନାହାନ୍ତି କାହିଁକି ? ସରକାର ଚାଷୀଙ୍କୁ ବିଭ୍ରାନ୍ତ କରିବା ପାଇଁ ଏମ୍‌ଏସ୍‌ପି ଠାରୁ ଅଧିକ ଦାମ୍ ମିଳିବ ବୋଲି ତ ପ୍ରଚାର କରୁଛନ୍ତି କିନ୍ତୁ ନୂଆ ଆଇନରେ ତାକୁ ନିଶ୍ଚିତ କରିବା ଭଳି କୌଣସି ବ୍ୟବସ୍ଥା କରି ନାହାନ୍ତି। କୃଷକଙ୍କୁ ସ୍ୱାଧୀନ ଓ ଆତ୍ମନିର୍ଭରଶୀଳ କରିବା ନାଁରେ ଯେଉଁ ଆଇନ ତିଆରି କରାଯାଇଛି, ସେଥିରେ କୃଷକଙ୍କ ଫସଲର ଦାମ୍ ନୁହେଁ ବରଂ କମ୍ପାନୀଙ୍କ ମୁନାଫାକୁ ନିଶ୍ଚିତ କରିବାର

ବ୍ୟବସ୍ଥା ରହିଛି । ସରକାରଙ୍କ ଜବାବ ହେଲା ଯେ ପୂର୍ବରୁ ଏମ୍ଏସ୍ପି ପାଇଁ କେବେ ଆଇନ ନଥିଲା, ତେଣୁ ବର୍ତ୍ତମାନ ଆଇନ କରିବାର କୌଣସି ଆବଶ୍ୟକତା ନାହିଁ। ଏହା ସତ ଯେ ପୂର୍ବରୁ ଏମ୍ଏସ୍ପି ଦେବା ପାଇଁ କୌଣସି ଆଇନଗତ ବ୍ୟବସ୍ଥା ନଥିଲା । ଏମ୍ଏସ୍ପି ସ୍ଥିର କରୁଥିବା ସଂସ୍ଥା ଏସିପିସି କେନ୍ଦ୍ର ସରକାରଙ୍କ କୃଷି ବିଭାଗ ଅଧିନରେ ଗଠିତ ଏକ କମିଟି ମାତ୍ର ଏବଂ ସେମାନଙ୍କ ସୁପାରିଶକୁ ବି ସରକାର ମାନିବାକୁ ବାଧ ନଥିଲେ । କିନ୍ତୁ ସେତେବେଳେ କୌଣସି ଘରୋଇ ମଣ୍ଡି ନଥିଲା କିମ୍ବା ଘରୋଇ କର୍ପୋରେଟ୍ମାନଙ୍କୁ କୃଷିଜାତ ଦ୍ରବ୍ୟ କିଣିବାକୁ ଏଭଳି ଅବାଧ ସ୍ୱାଧୀନତା ଦିଆଯାଇ ନଥିଲା ।

ମଣ୍ଡି ବାହାରେ ଖୋଲା ବଜାରରେ କମ୍ପାନୀମାନେ କୃଷକଙ୍କ ଠାରୁ ସିଧାସଳଖ କୃଷି ଉତ୍ପାଦକୁ କିଣିଲେ ଅଧିକ ଦାମ୍ ମିଳିବ ବୋଲି ଯେଉଁ ସରକାରୀ ପ୍ରଚାର ଚାଲିଛି, ତାହା ଏକଦମ୍ ମିଥ୍ୟା ଅଟେ । ବରଂ ଏନେଇ ଆମକୁ ବିପରୀତ ଅଭିଜ୍ଞତାଟି ଦେଖିବାକୁ ମିଳିଛି । ଏ କ୍ଷେତ୍ରରେ ଆମ ଆଗରେ ବିହାରର ଉଦାହରଣ ରହିଛି । ୨୦୦୬ରେ ବିହାର ସରକାର କୃଷିର ବିକାଶ ନାଁରେ ରାଜ୍ୟର ଏପିଏମ୍ସି (ମଣ୍ଡି) ଆଇନକୁ ସମ୍ପୂର୍ଣ୍ଣ ଉଚ୍ଛେଦ କରି କୃଷି ଉତ୍ପାଦର କିଣାବିକା କ୍ଷେତ୍ରରେ ଘରୋଇ କମ୍ପାନୀଙ୍କ ପାଇଁ ରହିଥିବା ସମସ୍ତ କଟକଣାକୁ ହଟେଇ ଦେଇଥିଲେ । ଏଭଳି କରିବା ଦ୍ୱାରା ରାଜ୍ୟର କୃଷି କ୍ଷେତ୍ରରେ ଘରୋଇ ପୁଞ୍ଜିନିବେଶ ବଢ଼ିବ, ଘରୋଇ ମଣ୍ଡି ଗଢ଼ି ଉଠିବ, ଅନେକ ଗୁଡ଼ିଏ କମ୍ପାନୀ ଆସିଲେ ପ୍ରତିଦ୍ୱନ୍ଦିତା ବଢ଼ିବ ଏବଂ ଚାଷୀକୁ ତାର ଫସଲର ଅଧିକ ଦାମ ମିଳିବ ବୋଲି ସେତେବେଳେ କୁହାଗଲା । ଏପରିକି ଆଇନରେ ସଂଶୋଧନ ପରେ ବିହାର କୃଷିର ବିକାଶରେ ପଞ୍ଜାବକୁ ବି ଟପିଯିବ ବୋଲି ମଧ ଦାବୀ କରାଯାଇଥିଲା । କିନ୍ତୁ ଏହି ଆଇନର ସଂଶୋଧନର ଦିର୍ଘ ୧୪ ବର୍ଷ ପରେ ଆଜି ସେଠାକାର ଚାଷୀଙ୍କୁ ନା ସେମାନଙ୍କ ଫସଲର ଉପଯୁକ୍ତ ଦାମ୍ ମିଳିଛି ନା ରାଜ୍ୟରେ କୃଷି ସଙ୍କଟ ଦୂର ହୋଇଛି । ଯେଉଁ ଧାନ ପଞ୍ଜାବର ମଣ୍ଡିରେ କ୍ୱିଣ୍ଟା ପିଛା ୧୯୨୫ ଟଙ୍କାରେ ବିକ୍ରୀ ହେଉଛି, ତାହା ସରକାରୀ ସଂଗ୍ରହ ବ୍ୟବସ୍ଥା ନଥିବାରୁ ବିହାରର କୃଷକ ଆଜି କ୍ୱିଣ୍ଟାଲ ପିଛା ଅତି ବେଶୀରେ ୧୩୦୦ ଟଙ୍କାରେ ବିକ୍ରୀ କରିବାକୁ ବାଧ ହେଉଛନ୍ତି । ସେଠାରେ କୃଷିଜାତ ଦ୍ରବ୍ୟର ସରକାରୀ କ୍ରୟ ମାତ୍ର ୧% ମଧରେ ସିମୀତ ରହିଛି । ବିହାରରେ

ମୋଟ ଖାଦ୍ୟଶସ୍ୟ ସଂଗ୍ରହ କେନ୍ଦ୍ରର ସଂଖ୍ୟା ୨୦୧୫-୧୬ରେ ୯୦୦୦ ଥିବା ବେଳେ ୨୦୧୯-୨୦ରେ ତାହା ୧୬୧୯କୁ ହ୍ରାସ ପାଇଛି। ସରକାରୀ ମଣ୍ଡି ବ୍ୟବସ୍ଥା ଭାଙ୍ଗି ମୁକ୍ତ ବଜାରକୁ ଆପଣେଇବା ପରେ ବିହାରର କୃଷକମାନେ ନା ଫସଲର ଅଧିକ ଦାମ୍ ପାଇଛନ୍ତି ନା ସରକାରୀ ଘୋଷିତ ଏମ୍‌ଏସ୍‌ପିର ଲାଭ ପାଇପାରିଛନ୍ତି। ବରଂ ଭୟଙ୍କର କୃଷି ସଙ୍କଟର ପରିଣାମ ସ୍ୱରୂପ ଆଜି ପଳାୟନରେ ବିହାର ଦେଶର ସବୁଠାରୁ ଆଗରେ ରହିଛି।

## ଫସଲର ଏମ୍‌ଏସ୍‌ପି ବ୍ୟବସ୍ଥାର ଅନ୍ତ ଘଟିବ

ସତୁରୀ ଦଶକରେ ଦେଶରେ ଖାଦ୍ୟ ସଙ୍କଟର ସମାଧାନ ନାଁରେ ଖାଦ୍ୟଶସ୍ୟର ଅଧିକ ଉତ୍ପାଦନ କରିବା ଲକ୍ଷ୍ୟରେ ଯେତେବେଳେ ସବୁଜ ବିପ୍ଳବ ଆରମ୍ଭ କରାଗଲା, ସେତେବେଳେ ତା ସହିତ ତାଳ ଦେଇ ସରକାରୀ ସଂଗ୍ରହର ବିଧିବଦ୍ଧ ବ୍ୟବସ୍ଥା ଆରମ୍ଭ ହୋଇଥିଲା। ଅଧିକ ଉତ୍ପାଦନ ହେତୁ ବଜାରରେ ଖାଦ୍ୟଶସ୍ୟର ଦରହ୍ରାସ ହେବାର ସମ୍ଭାବନା ଥିବାରୁ ସେଥିରୁ ଚାଷୀଙ୍କୁ ସୁରକ୍ଷା ଦେବା ପାଇଁ ସରକାରୀ ମଣ୍ଡି ବ୍ୟବସ୍ଥା ସ୍ଥାପନ ହେବା ସହ ଫସଲର ସର୍ବନିମ୍ନ ସହାୟକ ଦର ବା ଏମ୍‌ଏସ୍‌ପି ଘୋଷଣା କରିବା ଆରମ୍ଭ ହୋଇଥିଲା। ଯଦିଓ ଏହା ଫସଲର ଲାଭଜନକ ଦର ନଥିଲା, କିନ୍ତୁ କୃଷି ଉତ୍ପାଦର ସହାୟକ ଦର ଥିଲା। ତାହା ଚାଷୀକୁ ଲାଭ ଦେଇ ନପାରିଲେ ବି କ୍ଷତିର ଶୀକାର କରିବନି ବୋଲି କୁହାଯାଇପାରେ। ବଜାରର ଅନିଶ୍ଚିତତାରୁ ଚାଷୀକୁ ବଞ୍ଚାଇବାର ଘୋଷିତ ଲକ୍ଷ୍ୟ ନେଇ ଚାଲିଥିବା ଏହି ବ୍ୟବସ୍ଥାରେ ଦେଶର ସବୁ ଫସଲ କିମ୍ବା ସବୁ ଚାଷୀଙ୍କ କୃଷି ଉତ୍ପାଦକୁ ସଂଗ୍ରହ କରିବାରେ ତଥା ସେମାନଙ୍କୁ ଏମ୍‌ଏସ୍‌ପି ଦେବାରେ ସକ୍ଷମ ହୋଇ ପାରନି। ଏମ୍‌ଏସ୍‌ପି ନେଇ ସରକାରଙ୍କ ବଡ଼ ବଡ଼ ଘୋଷଣା ସତ୍ତ୍ୱେ ଦେଶର ମୋଟ ଫସଲର ମାତ୍ର ୧୩% କୁ ହିଁ ଏମ୍‌ଏସପି ଦେଇ ସଂଗ୍ରହ କରିପାରୁଛନ୍ତି।

ବର୍ତ୍ତମାନ ମାତ୍ର ୨୩ ଟି ଫସଲ ପାଇଁ ହିଁ ଏମ୍‌ଏସ୍‌ପି ଘୋଷଣା କରାଯାଉଛି। ଫସଲର ଉତ୍ପାଦନ ଖର୍ଚ୍ଚକୁ ହିସାବ କରି କୃଷି ବିଭାଗ ଦ୍ୱାରା ଗଠିତ କମିଟି ଫର୍ ଏଗ୍ରିକଲଚର୍ କଷ୍ଟ୍ ଏଣ୍ଡ୍ ପ୍ରାଇସ୍ (ସିଏସିପି)ର ସୁପାରିଶ ଅନୁଯାୟୀ ସରକାର ପ୍ରତିବର୍ଷ ଖରିଫ୍ ଓ ରବି ଋତୁ ପୂର୍ବରୁ ଦୁଇ ଥର ଏମ୍‌ଏସ୍‌ପି ଘୋଷଣା କରୁଛନ୍ତି।

ଅବଶ୍ୟ ଏହି କମିଟିର ମୂଲ୍ୟ ନିର୍ଦ୍ଧାରଣଟି ତ୍ରୁଟୀପୂର୍ଣ୍ଣ ହୋଇଥିବାରୁ ଏକ ବିଜ୍ଞାନସମ୍ମତ ମୂଲ୍ୟ ନିର୍ଦ୍ଧାରଣ ପଦ୍ଧତିକୁ ଆପଣେଇବାକୁ ଚାଷୀ ସଙ୍ଗଠନମାନେ ବାରମ୍ବାର ଦାବି କରି ଆସିଛନ୍ତି।

ସାଧାରଣତଃ ତିନୋଟି ହିସାବରେ ଫସଲର ଉତ୍ପାଦନ ଖର୍ଚ୍ଚକୁ ଆକଳନ କରି ତାହାରି ଆଧାରରେ ସର୍ବନିମ୍ନ ମୂଲ୍ୟ ବା ଏମ୍‌ଏସ୍‌ପି ଧାର୍ଯ୍ୟ କରାଯାଇଥାଏ। ପ୍ରଥମଟି ହେଉଛି ଫସଲ ପାଇଁ ବିହନ, ସାର, କୀଟନାଶକ ଓ ଆବଶ୍ୟକୀୟ ଉପକରଣ ବା ଲଗୁତି ବାବଦରେ ହେଉଥିବା ବ୍ୟୟ + ୫୦% ଲାଭ। ଦ୍ୱିତୀୟଟି ହେଉଛି ଫସଲର ଲଗୁତି ସହିତ ପାରିବାରିକ ଶ୍ରମକୁ ମିଶାଇ ବ୍ୟୟ + ୫୦% ଅର୍ଥାତ୍ ଏ୨ + ୫୦%। ତୃତୀୟରେ ଏ୨ ସହିତ ଜମିର ଭଡ଼ା ଏବଂ କୃଷି ପାଇଁ ନିଆଯାଇଥିବା ଋଣର ସୁଧକୁ ମିଶାଇ ବ୍ୟୟ ବା ସି୨+ ୫୦%। ଉପରୋକ୍ତ ତିନୋଟି ପଦ୍ଧତି ମଧ୍ୟରୁ ଶେଷୋକ୍ତ ପଦ୍ଧତି ଅର୍ଥାତ୍ ସି୨+୫୦% ହେଉଛି ସବୁଠାରୁ ଉପଯୁକ୍ତ ପଦ୍ଧତି ଅଟେ। ଦେଶର କୃଷି ସଙ୍କଟର ସମାଧାନ ପାଇଁ କୃଷି ବୈଜ୍ଞାନିକ ଏମ୍. ଏସ୍. ସ୍ୱାମୀନାଥନ୍‌ଙ୍କ ଅଧ୍ୟକ୍ଷତାରେ ଗଠିତ ଜାତୀୟ କୃଷି କମିଶନ ମଧ୍ୟ ୨୦୦୫ ମସିହାରେ ଦେଇଥିବା ତାଙ୍କ ରିପୋର୍ଟରେ ସି୨+୫୦%କୁ ଆଧାର କରି ହିଁ ଫସଲର ସର୍ବନିମ୍ନ ସହାୟକ ଦର ଘୋଷଣା କରିବାକୁ ସୁପାରିଶ କରିଛନ୍ତି। କିନ୍ତୁ ସରକାର ଏହା ବଦଳରେ ସବୁବେଳେ ଏ୨+୫୦% ହିସାବରେ ହିଁ ସହାୟକ ଦର ନିର୍ଦ୍ଧାରଣ କରି ଆସିଛନ୍ତି। କିଛି ବର୍ଷ ତଳେ ଓ.ଇ.ସି.ଡ଼ି ସଂସ୍ଥା ତା'ର ରିପୋର୍ଟରେ କହିଥିଲା ଯେ ଯଦି ସରକାର ଆରମ୍ଭରୁ ସି୨+୫୦% ହିସାବରେ କୃଷିଜାତ ଦ୍ରବ୍ୟର ଏମ୍‌ଏସ୍‌ପି ପ୍ରଦାନ କରିଥାନ୍ତେ, ତାହେଲେ ଭାରତର କୃଷକମାନଙ୍କୁ ଅଧିକ ୪୫ ଲକ୍ଷ କୋଟି ଟଙ୍କା ଦେବାକୁ ପଡ଼ିଥାନ୍ତା।

କ୍ଷମତାକୁ ଆସିବା ପୂର୍ବରୁ ବି ନରେନ୍ଦ୍ର ମୋଦି ଓ ତାଙ୍କ ଦଳ ମଧ୍ୟ ୨୦୧୪ ମସିହାର ନିର୍ବାଚନ ଇସ୍ତାହାରରେ ସରକାରକୁ ଆସିଲେ ସ୍ୱାମୀନାଥନ୍ କମିଶନଙ୍କ ସୁପାରିଶକୁ ସମ୍ପୂର୍ଣ୍ଣ ଲାଗୁ କରି ଚାଷୀଙ୍କ ମୋଟ ଉତ୍ପାଦନ ଖର୍ଚ୍ଚ ଉପରେ ୫୦% ମିଶାଇ ଏମ୍‌ଏସ୍‌ପି ଦେବାକୁ ପ୍ରତିଶ୍ରୁତି ଦେଇଥିଲେ। କିନ୍ତୁ ମୋଦି ସରକାର ନିଜର ଛଅ ବର୍ଷର ଶାସନ କାଳରେ ସି୨ + ୫୦% ପରିବର୍ତ୍ତେ ଏ୨ + ୫୦% କୁ ହିଁ

ଏମ୍‌ଏସ୍‌ପି ରୂପେ ଘୋଷଣା କରି ଆସିଛନ୍ତି । ଅତଏବ ମୋଦିଙ୍କ ଆର୍‌ଏସ୍‌ଏସ୍-ବିଜେପିର ସରକାର ସ୍ୱାମୀନାଥନ୍ କମିଶନଙ୍କ ସୁପାରିଶକୁ ତ ଲାଗୁ କରିନାହିଁ ବରଂ ତାରି ନାଁରେ ଦେଶର କୋଟି କୋଟି ଚାଷୀଙ୍କୁ ମିଛ ପ୍ରତିଶ୍ରୁତି ଦେଇ ପ୍ରତାରିତ କରିଛି । କୃଷକଙ୍କୁ ବିଭ୍ରାନ୍ତ କରିବାକୁ କୃଷି ସଙ୍କଟର ମହୌଷଧି ଭାବେ କେତେବେଳେ ଇ-ନାମ୍‌କୁ ପ୍ରଚାର କରୁଥିବା ବେଳେ କେତେବେଳେ କୃଷକଙ୍କ ଆୟକୁ ୨୦୨୨ ସୁଦ୍ଧା ଦ୍ୱିଗୁଣିତ କରିବାକୁ ଲକ୍ଷ୍ୟ ରଖିଥିବା କଥା କହିଛନ୍ତି । ସି୧+୫୦% ଆଧାରରେ ଏମ୍‌ଏସ୍‌ପିକୁ ବଢ଼ାଇବା ତଥା ଅଧିକରୁ ଅଧିକ ଫସଲକୁ ଏମ୍‌ଏସ୍‌ପିର ପରିସରଭୁକ୍ତ କରି ଚାଷୀ ଯେପରି ନିଜର କୃଷି ଉତ୍ପାଦକୁ ସୁବିଧାରେ ବିକ୍ରୀ କରି ପାରିବେ, ସେ ଦିଗରେ କୌଣସି ଉଦ୍ୟମ ନାହିଁ ।

ମୋଦିଙ୍କ ଗତ ଛଅ ବର୍ଷର ଶାସନକାଳ ମଧ୍ୟରେ ଏମ୍‌ଏସ୍‌ପିରେ ଯେଉଁ ବାର୍ଷିକ ବୃଦ୍ଧି ହୋଇଛି ତାହା ମାତ୍ର ୩-୫% ଅଟେ । ଏହା ଫସଲର ଉତ୍ପାଦନ ଖର୍ଚ୍ଚରେ ବୃଦ୍ଧିର ହାର ଏପରିକି ବଜାରରେ ଦରଦାମ୍ ବୃଦ୍ଧି ହାର ବା ମୁଦ୍ରାସ୍ଫିତି ଠାରୁ ବି କମ୍ ଅଟେ । ନିକଟରେ ଦେଶବ୍ୟାପୀ ଚାଷୀ ଆନ୍ଦୋଳନ ପରିପ୍ରେକ୍ଷୀରେ ସରକାର ତରବରିଆ ଭାବେ ବିଭିନ୍ନ ରବି ଫସଲ ପାଇଁ ଯେଉଁ ଘୋଷଣା କରିଛନ୍ତି ତାହା ବି ନାମକୁ ମାତ୍ର ଅଟେ । ଗତଥର ଠାରୁ ଚଳିତ ଥର ସରକାର ଏମ୍‌ଏସ୍‌ପିରେ ମାତ୍ର ୨-୬% ହିଁ ବୃଦ୍ଧି କରିଥିବା ବେଳେ ସେହି ଅବଧିରେ ଫସଲର ଉତ୍ପାଦନ ଖର୍ଚ୍ଚରେ କିନ୍ତୁ ୬-୬.୫% ବୃଦ୍ଧି ହୋଇଥିବା ଦେଖାଯାଇଛି ।

## ଏମ୍‌ଏସ୍‌ପି ନେଇ ସରକାରଙ୍କ ମିଥ୍ୟା ପ୍ରଚାର

ସରକାରଙ୍କ ନୂଆ ଆଇନ ଫଳରେ କୃଷି କ୍ଷେତ୍ରରେ ସରକାରୀ ସଂଗ୍ରହ ଓ ଏମ୍‌ଏସ୍‌ପି ବ୍ୟବସ୍ଥାର ଅସ୍ତିତ୍ୱ ନେଇ ଯେଉଁ ଦେଶର କୃଷକଙ୍କ ମଧ୍ୟରେ ଯେଉଁ ଆଶଙ୍କା ସୃଷ୍ଟି ହୋଇଛି ତା'ର ଜବାବରେ ପ୍ରଧାନମନ୍ତ୍ରୀ ଏହାକୁ ଅମୂଳକ ବୋଲି କହି ଖଣ୍ଡନ କରିଛନ୍ତି । ତେବେ ନୂଆ ଆଇନ ଓ ସରକାରଙ୍କ ନୀତି ତଥା ଆଭିମୁଖ୍ୟକୁ ଦେଖିଲେ ଏମ୍‌ଏସ୍‌ପି ନେଇ କୃଷକଙ୍କ ମନରେ ସୃଷ୍ଟି ହୋଇଥିବା ଆଶଙ୍କାଟି ଆଦୌ ଅମୂଳକ ନୁହେଁ ବୋଲି କୁହାଯାଇପାରେ । କାରଣ ଅତିତରେ ସରକାରଙ୍କ ଦ୍ୱାରା ନିୟୋଜିତ ବିଭିନ୍ନ କମିଟି ସେମାନଙ୍କ ରିପୋର୍ଟର ଏମ୍‌ଏସ୍‌ପି ବ୍ୟବସ୍ଥାର ସମାପ୍ତି

ପାଇଁ ସୁପାରିଶ କରି ଆସିଛନ୍ତି । ଏପରିକି ଫେବୃଆରୀ ୨୦୧୫ରେ ଖୋଦ୍ କେନ୍ଦ୍ର ସରକାର ସୁପ୍ରିମ୍‌କୋର୍ଟରେ ଶପଥ ପାଠ କରି ସ୍ୱାମୀନାଥନ୍ କମିଶନଙ୍କ ସୁପାରିଶ ଅନୁଯାୟୀ ସି-୨ + ୫୦% ହିସାବରେ କୃଷକଙ୍କୁ ଫସଲର ଏମ୍‌ଏସ୍‌ପି ଦିଆଯାଇ ପାରିବନି ବୋଲି ସ୍ପଷ୍ଟ ଭାବେ କହିଥିଲେ ।

ନୂଆ ଆଇନରେ ଘରୋଇ କମ୍ପାନୀ ବା ବ୍ୟବସାୟୀମାନେ ସରକାରୀ ମଣ୍ଡି ବାହାରେ ଫସଲର କିଣାବିକା କରିପାରିବେ ବୋଲି ତ କୁହାଯାଇଛି କିନ୍ତୁ ସେମାନେ ଏମ୍‌ଏସ୍‌ପି ଦେବାକୁ ଆଉ ବାଧ୍ୟ ନୁହଁନ୍ତି । ଏଠାରେ ଜାଣି ରଖିବା ଦରକାର ଯେ କର୍ପୋରେଟ୍ କମ୍ପାନୀମାନେ କେବେ ସେବା ପାଇଁ ଆସିନଥାନ୍ତି । ସେମାନଙ୍କ ଉଦ୍ଦେଶ୍ୟ ହେଲା ଯେକୌଣସି ପ୍ରକାରେ ବିପୁଳ ମୁନାଫା କମାଇବା । ସରକାରୀ ଟେଲିକମ୍ କମ୍ପାନୀ ବିଏସ୍‌ଏନ୍‌ଏଲ୍‌କୁ ଦୋବାଳିଆ କରିବା ପାଇଁ ରିଲାଏନ୍ସ ଜିଓ ବର୍ଷେ ଯାଏଁ ଗ୍ରାହକଙ୍କୁ ମାଗଣାରେ କଲ୍‌ର ସୁବିଧା ଦେବା ପରି ହୁଏତ ପ୍ରାଥମିକ ଭାବେ ଚାଷୀଙ୍କୁ ଆକର୍ଷିତ କରିବା ପାଇଁ ରିଲାଏନ୍ସ, ୱାଲମାର୍ଟ ପରି ଘରୋଇ କମ୍ପାନୀମାନେ ନିଜର ବିପୁଳ ପୁଞ୍ଜି ବଳରେ ମଣ୍ଡି ବାହାରେ କୃଷି ଉତ୍ପାଦର ଅଧିକ ଦର ବି ଦେଇ ପାରନ୍ତି । କିନ୍ତୁ ଏହା ପଛରେ ସେମାନଙ୍କ ଉଦ୍ଦେଶ୍ୟ ଚାଷୀଙ୍କ ଉତ୍ପାଦ ପାଇଁ ଅଧିକ ମୂଲ୍ୟ ଦେଇ ସେମାନଙ୍କ ଆର୍ଥିକ ସମୃଦ୍ଧି ଆଣିବା ନୁହେଁ । ବରଂ ସରକାରୀ ମଣ୍ଡି ଓ ସଂଗ୍ରହ ବ୍ୟବସ୍ଥାକୁ ଦୁର୍ବଳ ଓ ଧ୍ୱଂସ କରି କୃଷି ଉତ୍ପାଦର ବ୍ୟବସାୟ କ୍ଷେତ୍ରରେ ନିଜର ଏକାଧିକାର ପ୍ରତିଷ୍ଠା କରିବା ହେଉଛି ସେମାନଙ୍କ ଲକ୍ଷ୍ୟ । ଏହା ବଜାର ଦଖଲ ପାଇଁ ବୃହତ୍ତ କମ୍ପାନୀମାନଙ୍କ ସୁନିୟୋଜିତ ରଣନୀତିର ଏକ ଅଂଶ ବିଶେଷ । ପ୍ରାଥମିକ ଅବସ୍ଥାରେ ଏମ୍‌ଏସ୍‌ପି ଠାରୁ ବି ଅଧିକ ଦାମ ଦେଲେ, ଅଧିକ ଦାମ୍ ଲୋଭରେ ଚାଷୀମାନେ ସରକାରୀ ମଣ୍ଡି ଛାଡ଼ି ହୁଏତ ମଣ୍ଡି ବାହାରେ କମ୍ପାନୀମାନଙ୍କୁ ନିଜର ଉତ୍ପାଦକୁ ବିକ୍ରୀ କରିପାରନ୍ତି । କିନ୍ତୁ ଏହା ଫଳରେ ଘରୋଇ କମ୍ପାନୀଙ୍କ ଦ୍ୱାରା ମଣ୍ଡି ବାହାରେ କିଣାବିକା ବଢ଼ିବ ଏବଂ ସରକାରୀ ମଣ୍ଡି ଧିରେ ଧିରେ ଅକାମୀ ହୋଇ ଶେଷରେ ବନ୍ଦ ହୋଇଯିବ । ଥରେ ସରକାରୀ ସଂଗ୍ରହ ବ୍ୟବସ୍ଥା ଭାଙ୍ଗି ତାରି ଜାଗାରେ ଘରୋଇ କମ୍ପାନୀଙ୍କ ଏକାଧିକାର ପ୍ରତିଷ୍ଠା ହୋଇଗଲେ, ଚାଷୀଙ୍କ ପାଖରେ ଆଉ ବିକଳ୍ପ ରହିବନି । ସେମାନେ କମ୍ପାନୀଙ୍କ ବ୍ୟବସାୟ କୌଶଳ ଆଗରେ ଏକଦମ୍ ଅସହାୟ ହୋଇ କମ୍ ଦାମ୍‌ରେ ନିଜର

ଉତ୍ପାଦକୁ ବିକ୍ରୀ କରିବାକୁ ବାଧ ହେବେ। ଏଭଳି ଏକ ପରିସ୍ଥିତି ଉଭୟ କମ୍ପାନୀ ଏବଂ ସେମାନଙ୍କ ପୃଷ୍ଠପୋଷକ ସାଜିଥିବା ସରକାରଙ୍କୁ ସୁହାଇବ। କାରଣ ଚାଷୀଙ୍କ ଠାରୁ ଉତ୍ପାଦକୁ ଶସ୍ତାରେ ସଂଗ୍ରହ କରି କମ୍ପାନୀମାନେ ବିପୁଳ ମୁନାଫା କମାଇବା ବେଳେ ଏମଏସ୍‌ପି ଜରିଆରେ କୃଷି ଉତ୍ପାଦର ସଂଗ୍ରହ ବନ୍ଦ ହୋଇଗଲେ, ସରକାର ଆଉ ସେ ବାବଦରେ ଖର୍ଚ୍ଚ କରିବା ଦରକାର ପଡ଼ିବନି।

## ଖୋଲା ବଜାର ଚାଷୀର ଫସଲର ଅଧିକ ଦାମ୍ ଦେବନି

କୃଷକ ଓ ଆଡ଼ତିଆଙ୍କ ଉପରେ ହୋଇଥିବା ଏକ ସର୍ବେକ୍ଷଣର ଆଧାରରେ ଭାରତୀୟ ରିଜର୍ଭ ବ୍ୟାଙ୍କର ୨୦୧୮ର ରିପୋର୍ଟ ଅନୁଯାୟୀ ଦେଶର ଅର୍ଦ୍ଧାଧିକ କୃଷକଙ୍କ ମତ ହେଲା, ଉତ୍ପାଦିତ ଫସଲ ପାଇଁ ଏମ୍‌ଏସ୍‌ପି ଯୋଜନାଟି କୃଷକଙ୍କ ପାଇଁ ସବୁଠାରୁ ଲାଭଜନକ ଯୋଜନା ଅଟେ। କିନ୍ତୁ ସରକାରଙ୍କ ଏହି ଆଇନରେ କେଉଁଠାରେ ବି କମ୍ପାନୀ ବା ବେପାରୀଙ୍କୁ ଏମ୍‌ଏସ୍‌ପି ଠାରୁ କମ୍ ଦରରେ ବିକ୍ରୀ କରିବାକୁ ପ୍ରତିବନ୍ଧକ ଲଗାଇବା ଦୂରର କଥା ଏମ୍‌ଏସ୍‌ପିର ଉଲ୍ଲେଖ ହିଁ ନାହିଁ। ଏହା ସତ ଯେ ସରକାର ବର୍ତ୍ତମାନ ଏମ୍‌ଏସ୍‌ପିକୁ ଏକଦମ୍ ବନ୍ଦ କରିବେନି। ତାକୁ କାଗଜ କଲମରେ ତ ଅବ୍ୟାହତ ରଖିବେ। କିନ୍ତୁ ତାକୁ ଏପରି ଦୁର୍ବଳ କରି ଦିଆଯିବ ଯେପରି ତାହାର ଲାଭ ଲୋକଙ୍କୁ ଆଉ ମିଳିବନି।

ବିହାରରେ ମଣ୍ଡି ବ୍ୟବସ୍ଥାର ଉଚ୍ଛେଦ ପରେ ଘରୋଇ ବ୍ୟବସାୟୀମାନେ ସରକାରୀ ମଣ୍ଡି ବାହାରେ ଚାଷୀର ଫସଲକୁ କିଣିବାର ସ୍ୱାଧୀନତା ପାଇଲେ ସତ, କିନ୍ତୁ ଏହାଦ୍ୱାରା ଚାଷୀଙ୍କୁ କୌଣସି ଫାଇଦା ମିଳିଲାନି। ମଣ୍ଡି ବାହାରେ ଚାଷୀମାନେ ନିଜ ଉତ୍ପାଦକୁ ପୂର୍ବାପେକ୍ଷା କମ୍ ଦରରେ ବିକ୍ରି କରିବାକୁ ବାଧ ହେଲେ। ୨୦୧୯-୨୦ରେ ଧାନର କ୍ୱିଣ୍ଟାଲ ପିଛା ଏମ୍‌ଏସ୍‌ପି ୧୮୧୫ ଟଙ୍କା ଥିବା ବେଳେ ସରକାରୀ ମଣ୍ଡି ଓ ସରକାରୀ ସଂଗ୍ରହ ନଥିବାରୁ କୃଷକମାନେ ତାକୁ ୧୩-୧୪ ଶହ ଟଙ୍କାରେ ବିକ୍ରୀ କରିବାକୁ ବାଧ ହେଲେ। ସେହିପରି ଗହମର ଏମ୍‌ଏସ୍‌ପି ଟ.୧୯୨୫ ଘୋଷିତ ହୋଇଥିବା ବେଳେ କୃଷକମାନେ ନିଜର ଉତ୍ପାଦିତ ଗହମକୁ ୧୭-୧୮ ଶହ ଟଙ୍କାରେ ବିକ୍ରୀ କରିବାକୁ ବାଧ ହୋଇଛନ୍ତି। ମକାର ଏମ୍‌ଏସ୍‌ପି ଟ.୧୮୫୦ ଥିବା ବେଳେ ତାକୁ ୧୦୦୦-୧୨୦୦ ଟଙ୍କାରେ ବିକ୍ରୀ କରିବାକୁ

ବାଧ୍ୟ ହୋଇଛନ୍ତି । ଅତଏବ ସରକାରୀ ମଣ୍ଡି ବାହାରେ ଖୋଲା ବଜାରରେ ଉତ୍ପାଦକୁ ବିକ୍ରୀ କଲେ ଚାଷୀଙ୍କୁ ଏମ୍‌ଏସ୍‌ପି ଠାରୁ ଅଧିକ ଦାମ ମିଳିବ ବୋଲି ଯେଉଁ ସରକାରୀ ପ୍ରଚାର ଚାଲିଛି, ତାହା ଭିତ୍ତିହୀନ ଅଟେ ।

## ଏମ୍‌ଏସ୍‌ପି ବ୍ୟବସ୍ଥାର ସମାପ୍ତି ନୁହେଁ, ତାକୁ ସୁଦୃଢ଼ କରିବା ଦରକାର

ପ୍ରଚଳିତ ସରକାରୀ ସଂଗ୍ରହ ବ୍ୟବସ୍ଥାରେ ବହୁତ କମ୍ ଚାଷୀ ହିଁ ସରକାରୀ ଘୋଷିତ ଏମ୍‌ଏସ୍‌ପି ପାଉଛନ୍ତି ଏବଂ ଘରୋଇ କମ୍ପାନୀ ଆସିଲେ ଚାଷୀ ତା'ର ଉତ୍ପାଦର ଅଧିକ ଦାମ୍ ପାଇବ ବୋଲି ସରକାର କହିଛନ୍ତି । ଏହା ସତ ଯେ ଦେଶର ବହୁତ କମ୍ ସଂଖ୍ୟକ ଚାଷୀ ହିଁ ସରକାରୀ ଏମଏସ୍‌ପିରେ ନିଜର କୃଷି ଉତ୍ପାଦକୁ ବିକ୍ରୀ କରି ପାରୁଛନ୍ତି । ୨୦୧୫ରେ କେନ୍ଦ୍ର ସରକାରଙ୍କ ଦ୍ୱାରା ଗଠିତ ଶାନ୍ତାକୁମାର କମିଟି ଦେଶର ମାତ୍ର ୬% ଚାଷୀ ନିଜର କୃଷି ଉତ୍ପାଦକୁ ଏମ୍‌ଏସ୍‌ପିରେ ବିକ୍ରୀ କରି ପାରୁଛନ୍ତି ବୋଲି କହିଥିବା ବେଳେ ଅନ୍ୟାନ୍ୟ ଅଧ୍ୟୟନରୁ ତାହା ୧୨-୧୫% ମଧ୍ୟରେ ଥିବା ଜଣା ପଡ଼ିଛି । ଏଠାରେ ପ୍ରଶ୍ନ ଉଠେ, ଯଦି କୃଷକଙ୍କ ଆୟକୁ ଦ୍ୱିଗୁଣିତ କରିବାକୁ ଘୋଷଣା ସତ୍ତ୍ୱେ ମାତ୍ର ୬% ଚାଷୀ ହିଁ ସରକାରୀ ଘୋଷିତ ଏମ୍‌ଏସ୍‌ପିରେ ନିଜର ଉତ୍ପାଦକୁ ବିକ୍ରୀ କରି ପାରୁଛନ୍ତି, ତାହେଲେ ଏହା ସରକାରୀ ବିଫଳତାକୁ ହିଁ ପ୍ରମାଣିତ କରୁଛି ।

ପଞ୍ଜାବ ଓ ହରିଆନାରେ ଚାଷୀଙ୍କ ମୋଟ କୃଷି ଉତ୍ପାଦର ଏକ ବଡ଼ ଭାଗ ମଣ୍ଡି ଜରିଆରେ ସରକାର ଏମ୍‌ଏସ୍‌ପି ଦେଇ ସଂଗ୍ରହ କରୁଥିବା ବେଳେ ଅନ୍ୟ ରାଜ୍ୟରେ ତାହା ଅତି ବେଶିରେ ୧୦% ରହିଛି । ଫଳସ୍ୱରୂପ, ସେଠାକାର ଚାଷୀ ଧାନ କିଲୋ ପିଛା ୧୮.୮୮ ଟଙ୍କା ପାଉଥିବା ବେଳେ ଅନ୍ୟ ରାଜ୍ୟମାନଙ୍କରେ ଚାଷୀ ମାତ୍ର ୧୨-୧୪ ଟଙ୍କାରେ ବିକ୍ରୀ କରିବାକୁ ବାଧ୍ୟ ହେଉଛି । ଏହି କାରଣରୁ ହିଁ ବର୍ତ୍ତମାନର ଆଇନ ବିରୁଦ୍ଧରେ ସବୁଠାରୁ ବେଶୀ ପ୍ରତିବାଦ ଏହି ଦୁଇ ରାଜ୍ୟରେ ଦେଖିବାକୁ ମିଳିଛି । ଉତ୍ତର ପ୍ରଦେଶରେ ମଧ୍ୟ ସେଠାକାର ଉତ୍ପାଦିତ ଧାନର ମାତ୍ର ୭% ହିଁ ସରକାରୀ ସଂଗ୍ରହ ବ୍ୟବସ୍ଥା ଦ୍ୱାରା ସଂଗୃହୀତ ହେଉଥିବା ବେଳେ ବଳକା ୯୩% ଧାନ ଖୋଲା ବଜାରରେ ବିକ୍ରୀ ହେଉଛି । ଧାନର ସରକାରୀ ସଂଗ୍ରହ ମୂଲ୍ୟ

କ୍ୱିଣ୍ଟାଲ ପିଛା ୧୮୮୮ ଟଙ୍କା ଥିବା ବେଳେ ୯୩% ଧାନଚାଷୀ ତାଠାରୁ ବହୁତ କମ୍ ଅର୍ଥାତ୍ ୧୦୦୦-୧୧୦୦ ଟଙ୍କାରେ ବିକ୍ରୀ କରିବାକୁ ବାଧ ହେଉଛନ୍ତି ?

ସରକାରଙ୍କ ତଥ୍ୟ ଅନୁଯାୟୀ ଯଦି ମାତ୍ର ୬% ଚାଷୀ ହିଁ ଏମ୍‌ଏସ୍‌ପିର ଲାଭ ପାଉଛନ୍ତି, ତାହେଲେ ଦେଶର ବଳକା ୯୪% ଚାଷୀ ଖୋଲା ବଜାରରେ ନିଜର ଉତ୍ପାଦକୁ ବିକ୍ରୀ କରିବାକୁ ବାଧ ହେଉଛନ୍ତି । ସେମାନଙ୍କ ଉତ୍ପାଦର ଏକ ବଡ଼ ଭାଗ ଛୋଟ ବ୍ୟବସାୟୀଙ୍କ ଜରିଆରେ ବୃହତ୍ତ କମ୍ପାନୀ ମାନେ ପରୋକ୍ଷରେ ସଂଗ୍ରହ କରୁଛନ୍ତି ! ଏଠାରେ ପ୍ରଶ୍ନ ଉଠେ, ଯଦି ସରକାରୀ ମଣ୍ଡି ଓ ଏମ୍‌ଏସ୍‌ପି ବ୍ୟବସ୍ଥା ଲାଗି ଚାଷୀମାନେ ନିଜ ଉତ୍ପାଦର ଭଲ ଓ ଲାଭଜନକ ଦାମ୍ ପାଉନାହାନ୍ତି ବୋଲି ସରକାର ଯୁକ୍ତି କରୁଛନ୍ତି, ତାହେଲେ, ମଣ୍ଡି ବାହାରେ ଖୋଲା ବଜାରରେ ନିଜର କୃଷି ଉତ୍ପାଦକୁ ବିକ୍ରୀ କରୁଥିବା ଦେଶର ସଂଖ୍ୟାଗରିଷ୍ଠ (୯୪%) ଚାଷୀ ଏମ୍‌ଏସପି ଠାରୁ ବି ବହୁତ କମ୍ ଦାମ୍ ପାଇ ଅଭାବୀ ବିକ୍ରୀର ଶୀକାର ହେଉଛନ୍ତି କିପରି ? ଅତଏବ ଖୋଲା ବଜାର ବା ଘରୋଇ ବ୍ୟବସାୟୀ ବା କମ୍ପାନୀମାନେ ଯେ ଚାଷୀକୁ ତାର ଉତ୍ପାଦର ଭଲ ଦର ଦେବ ତାହା ଏକଦମ୍ ଭୁଲ ଅଟେ । ସତ କହିବାକୁ ଗଲେ, ମଣ୍ଡି ବାହାରେ କେହି ଚାଷୀକୁ ତାର ଉତ୍ପାଦ ପାଇଁ ଏମ୍‌ଏସ୍‌ପି ଦେବା ଦେଖାଯାଇନି । ବରଂ ବର୍ତ୍ତମାନ ଏକ ବିକଳ୍ପ ଭାବେ ସରକାରୀ ମଣ୍ଡି ବ୍ୟବସ୍ଥା ଏବଂ ଏମ୍‌ଏସ୍‌ପି ଥିବାରୁ ମଣ୍ଡି ବାହାରେ ବଜାରରେ ବି ଚାଷୀର କିଛି ମାତ୍ରାରେ ମୂଲଚାଲ କ୍ଷମତା ରହୁଛି । ଯଦି ସରକାରୀ କ୍ରୟ ବ୍ୟବସ୍ଥା ନଥାନ୍ତା, ତାହେଲେ ମଣ୍ଡି ବାହାରେ ଚାଷୀ ଯେତିକି ବି ଦର ପାଉଛନ୍ତି, ତାହା ପାଇ ପାରି ନଥାନ୍ତେ । ଓଡ଼ିଶାରେ ମାଣ୍ଡିଆ ଚାଷକୁ ପ୍ରୋତ୍ସାହନ ଦେବା ପାଇଁ ସରକାର ମିଲେଟ ମିଶନ୍ ଆରମ୍ଭ କରି ମଣ୍ଡିରେ ତାର ସଂଗ୍ରହ କରିବା ପରେ ମାଣ୍ଡିଆ ଚାଷୀମାନେ ଅପେକ୍ଷାକୃତ ଭଲ ଦର ପାଉଛନ୍ତି । ପୂର୍ବରୁ ମାଣ୍ଡିଆ କିଲୋ ପିଛା ଦର ୧୦-୧୨ ଟଙ୍କା ଥିବା ବେଳେ ବର୍ତ୍ତମାନ ସରକାରୀ ମଣ୍ଡିରେ ଚାଷୀ କିଲୋ ପିଛା ୩୦ ଟଙ୍କା ପାଉଛନ୍ତି ।

ତେବେ ନୂଆ ଆଇନ ଲାଗୁହେବା ପରେ, ଥରେ ସରକାରୀ ଏମ୍‌ଏସ୍‌ପି ବ୍ୟବସ୍ଥା ଦୁର୍ବଳ ହୋଇ କୃଷି ବଜାର ଉପରେ କମ୍ପାନୀମାନଙ୍କ ଏକାଧିକାର ଆସିଗଲେ, ଚାଷୀ ଏବେ ତା'ର ଉତ୍ପାଦର ଯେତିକି ବି ଦର ପାଉଛି, ତାହା ବି ପାଇବାର ସମ୍ଭାବନା ନାହିଁ । ଚାଷୀ ବିକଳ୍ପହୀନ ହୋଇ କମ୍ ଦରରେ ନିଜର ଉତ୍ପାଦକୁ ବିକ୍ରୀ

କରିବାକୁ ବାଧ୍ୟ ହେବେ । ବିଶ୍ୱରେ କୃଷି ଉତ୍ପାଦର କିଣାବିକା ଉପରେ ଓ.ଇ.ସି.ଡ଼ି ସଂସ୍ଥାର ଅଧ୍ୟୟନରୁ ବି ଜଣାପଡ଼ିଛି ଯେ ଯେଉଁ ଦେଶରେ ସରକାରଙ୍କ ପକ୍ଷରୁ କୃଷି ଉତ୍ପାଦକୁ କିଣିବାର କୌଣସି ବ୍ୟବସ୍ଥା ନାହିଁ ସେସବୁ ଦେଶରେ ଚାଷୀଙ୍କୁ ନିଜ ଉତ୍ପାଦର ବହୁତ କମ୍ ଦାମ ହିଁ ମିଳୁଛି ।

## ପଞ୍ଜାବ ଓ ହରିଆନାର ଚାଷୀଙ୍କ ସମ୍ପର୍କରେ ଭୂଲ ପ୍ରଚାର

ବର୍ତ୍ତମାନର ଚାଷୀ ଆନ୍ଦୋଳନକୁ ବଦନାମ୍ କରିବା ପାଇଁ ସେଥିରେ ନେତୃତ୍ୱକାରୀ ଭୂମିକା ନେଉଥିବା ପଞ୍ଜାବ ଓ ହରିଆନାର ଚାଷୀଙ୍କ ସମ୍ପର୍କରେ କେନ୍ଦ୍ର ସରକାର ଓ ବିଜେପିର ନେତାମାନେ ଲଗାତର ଭୂଲ ଏବଂ ମିଥ୍ୟା ପ୍ରଚାର ଚଳାଇବା ଦେଖାଯାଇଛି । ସେମାନଙ୍କ ଏକ ପ୍ରଚାର ହେଉଛି ଯେ କେବଳ ପଞ୍ଜାବର ଚାଷୀମାନେ ଏବଂ ବିଶେଷ କରି ସେଠାକାର ଧନୀଚାଷୀମାନେ ହିଁ ଏମ୍ଏସ୍‌ପିର ସମସ୍ତ ସୁବିଧା ନେଉଥିବାରୁ ଆନ୍ଦୋଳନ କରୁଛନ୍ତି । ଏହା ଚାଷୀଙ୍କର ନୁହେଁ ବରଂ କୃଷି ବ୍ୟବସାୟରେ ନିୟୋଜିତ ଦଲାଲ ବା ଅଡ଼ତିଆମାନଙ୍କ ପ୍ରାୟୋଜିତ ଏକ ଆନ୍ଦୋଳନ । ଏଭଳି ପଚାର ସମ୍ପୂର୍ଣ୍ଣ ଭିତ୍ତିହୀନ ଏବଂ ମନ୍ଦ ଉଦ୍ଦେଶ୍ୟରେ କରାଯାଉଛି । ପଞ୍ଜାବ ସମ୍ପର୍କରେ ଖୋଦ୍ ସରକାରଙ୍କ ଦ୍ୱାରା ଜାରୀ ତଥ୍ୟ ଏହାର ବିପରୀତ କଥା କହୁଛି । ଏହା ସତ ଯେ ଅନେକ ବର୍ଷ ପର୍ଯ୍ୟନ୍ତ ଗହମ ଓ ଧାନର ସରକାରୀ କ୍ରୟରେ ପଞ୍ଜାବ ଓ ହରିଆନା ଦେଶରେ ପ୍ରଥମ ଓ ଦ୍ୱିତୀୟ ସ୍ଥାନରେ ରହୁଥିଲେ । ତେବେ ଗତ କିଛି ବର୍ଷ ହେଲା ସ୍ଥିତିରେ ପରିବର୍ତ୍ତନ ହୋଇଛି । ଚଳିତ ବର୍ଷ ମଧ୍ୟପ୍ରଦେଶ ଉଭୟ ପଞ୍ଜାବ ଓ ହରିଆନାକୁ ପଛରେ ପକାଇ ଦେଇଛି । ଦେଶର ମୋଟ ସରକାରୀ ଗହମ ସଂଗ୍ରହରେ ମଧ୍ୟପ୍ରଦେଶର ଭାଗ ୩୩% ହୋଇଥିବା ବେଳେ ପଞ୍ଜାବ ଓ ହରିଆନାର ଯଥାକ୍ରମେ ୨ ୨% ଓ ୧ ୮% ରହିଛି । ସେହିପରି ଧାନର ସଂଗ୍ରହରେ ପଞ୍ଜାବ ଓ ହରିଆନାର ଭାଗ ଯଥାକ୍ରମେ ୯% ଓ ୭% ଥିବା ବେଳେ ଓଡ଼ିଶା ଏବଂ ଛତିଶଗଡ଼ରେ ତାହା ଯଥାକ୍ରମେ ୧ ୧% ଓ ୩୩%ରେ ଯାଇ ପହଞ୍ଚିଛି ।

ଏଭଳି ହେବା ପଛରେ କାରଣଟି ହେଲା, ସେହି ଦୁଇଟି ରାଜ୍ୟରେ ହିଁ ଦେଶର ସବୁଜ ବିପ୍ଳବକୁ ସବୁଠାରୁ ବେଶୀ ଲାଗୁ କରିବାକୁ ସରକାର ଗୁରୁତ୍ୱ

ଦେଇଥିଲେ ଏବଂ ସରକାରୀ ପ୍ରୋତ୍ସାହନ ପାଇ ସେଠାକାର ଚାଷୀ ଖାଦ୍ୟଶସ୍ୟର ଉତ୍ପାଦନକୁ ବହୁଗୁଣ ବଢ଼ାଇ ଦେଇଥିଲେ। ଦେଶରେ ଖାଦ୍ୟଶସ୍ୟର ଉତ୍ପାଦନ ବଢ଼ାଇ ଖାଦ୍ୟ ସଙ୍କଟକୁ ଦୂର କରିବାରେ ପଞ୍ଜାବ ଓ ହରିଆନାର ଚାଷୀଙ୍କ ଭୂମିକାକୁ ଗତ ୫୦ ବର୍ଷ ଧରି ସବୁ ସରକାର ପ୍ରଶଂସା କରିବା ସହିତ ସେମାନଙ୍କୁ ପ୍ରୋତ୍ସାହିତ କରିବା ପାଇଁ ସବୁଠାରୁ ବେଶୀ ସରକାରୀ ମଣ୍ଡି ବସାଇବା ସହିତ ଏମ୍‌ଏସ୍‌ପିରେ କିଣିବାର ବ୍ୟବସ୍ଥା କରିଥିଲେ।

ଅତଏବ ପଞ୍ଜାବ ଓ ହରିଆନାର ଚାଷୀ ଦୀର୍ଘ ଦିନ ଧରି ଏମ୍‌ଏସ୍‌ପିର ସୁବିଧା ହାସଲ କରିବା କୌଣସି ଅସ୍ୱାଭାବିକ ନଥିଲା। ବରଂ ସରକାରୀ ପ୍ରାୟୋଜିତ ଏହି ସବୁଜ ବିପ୍ଳବର ରାସ୍ତାରେ ଯାଇ ସେମାନଙ୍କୁ ଅନେକ ମୂଲ୍ୟ ବି ଦେବାକୁ ପଡ଼ିଛି। ହାଇବ୍ରିଡ୍ ବିହନ, ରାସାୟନିକ ସାର, କୀଟନାଶକ ଓ ଧାନ ଗହମ ପରି ଏକକ ଫସଲ ସେଠାକାର ଉତ୍ପାଦନକୁ ବଢ଼ାଇ ସେମାନଙ୍କ ଆର୍ଥିକ ସମୃଦ୍ଧିକୁ ତ ବଢ଼ାଇଛି କିନ୍ତୁ ତାରି ବଦଳରେ ସେମାନଙ୍କ ଋଣଭାର ଭୟଙ୍କର ଭାବେ ବଢ଼ିବା ସହିତ ବଡ଼ ସଂଖ୍ୟାରେ ଲୋକ କ୍ୟାନସର୍ ରୋଗର ଶୀକାର ହୋଇଛନ୍ତି। ଦେଶର କୃଷକଙ୍କ ମଧ୍ୟରେ ଋଣଭାରରେ ପଞ୍ଜାବ ଓ ହରିଆନା ସବୁଠାରୁ ଆଗରେ ରହିଛନ୍ତି। ଏପରିକି ଋଣଭାର ଜନିତ ଆତ୍ମହତ୍ୟା କରିବାରେ ବି ସେଠାକାର ଚାଷୀ ଆଗରେ ଅଛନ୍ତି। ଆଧୁନିକ କୃଷି ନାଁରେ ଭୂତଳ ଜଳର ଅତ୍ୟଧିକ ଦୋହନ ଫଳରେ ସେଠାକାର ହାରାହାରି ଜଳସ୍ତର ଦୁଇ ଶହ ଫୁଟ ତଳକୁ ଚାଲିଯାଇଛି। କିନ୍ତୁ ଏସବୁ ବିଷୟରେ ସରକାର ଆଲୋଚନା କରିବାକୁ ପ୍ରସ୍ତୁତ ନୁହଁନ୍ତି।

ଅତଏବ ପଞ୍ଜାବ ଓ ହରିଆନାରେ ଏକକ ଫସଲର ଅତି ଉତ୍ପାଦନ ହେଉ ଅଥବା ଚାଷୀଙ୍କୁ ସର୍ବାଧିକ ଏମ୍‌ଏସ୍‌ପିର ସୁବିଧା ମିଳିବା ହେଉ, ସେଥିପାଇଁ ସେମାନେ ଦାୟୀ ନୁହଁନ୍ତି। ବରଂ କ୍ରମାଗତ ସରକାରମାନଙ୍କ ନୀତିର ହିଁ ତାହା ତାର୍କିକ ପରିଣାମ ଅଟେ। ଆଜି ଯେତେବେଳେ ସରକାର ମଣ୍ଡି ଓ ଏମ୍‌ଏସ୍‌ପି ବ୍ୟବସ୍ଥାକୁ ହଟାଇ ହଠାତ୍ ସେମାନଙ୍କୁ ଆମ୍ବାନୀ ଓ ଆଦାନୀଙ୍କ ପରି କର୍ପୋରେଟ୍ ବାଘ ମୁହଁକୁ ଛାଡ଼ିଦେବାକୁ କୃଷି ଆଇନ ଆଣିଛନ୍ତି, ସେତେବେଳେ ସେମାନେ ନିଜର ସବୁକିଛି ହରାଇବାର ଆଶଙ୍କାରେ ପ୍ରତିରୋଧ କରିବା ସ୍ୱାଭାବିକ।

କୃଷି ଆଇନର ସମର୍ଥକ ଏବଂ ସରକାରଙ୍କ ଆଉ ଏକ ଯୁକ୍ତି ହେଲା, ଯେ ଏମ୍‌ଏସ୍‌ପି ଯୋଗୁଁ ଦେଶରେ କେବଳ ଧାନ ଓ ଗହମ ପରି ଗୋଟିଏ ପ୍ରକାର ଫସଲର ଉତ୍ପାଦନ ବୃଦ୍ଧିପାଉଛି। ଏହା ଦେଶର ଖାଦ୍ୟ ସୁରକ୍ଷାର ବି ପରିପନ୍ଥୀ। କାରଣ ଧାନ ଓ ଗହମକୁ ଅଧିକ ଗୁରୁତ୍ୱ ଦେବା ଫଳରେ ସେସବୁରେ ତ ଆମେ ଆବଶ୍ୟକତାରୁ ଯଥେଷ୍ଟ ଅଧିକ ଉତ୍ପାଦନ କରୁଛୁ କିନ୍ତୁ ଆମର ଆବଶ୍ୟକତା ଠାରୁ ଅନେକ କମ୍ ଡ଼ାଲି ଓ ତୈଳବୀଜ ଉତ୍ପାଦନ ହେଉଥିବାରୁ ଆମେ ତାକୁ ବିଦେଶରୁ ଆମଦାନୀ କରିବାକୁ ବାଧ ହେଉଛୁ। ଅତଏବ, ଉପରୋକ୍ତ ଯୁକ୍ତିରେ ଯଦିଓ ଅନେକ ସତ୍ୟତା ରହିଛି, କିନ୍ତୁ ଏଥିପାଇଁ ଦାୟୀ କିଏ ? ଏଥିପାଇଁ ଚାଷୀ ନୁହଁନ୍ତି ବରଂ ସରକାରଙ୍କୁ ହିଁ ଦାୟୀ କରାଯାଇପାରେ। ସରକାରଙ୍କ ଭୂଲ ନୀତି ଲାଗି ହିଁ ଦେଶରେ ଏକକ ଫସଲର ଉତ୍ପାଦନ ବଢ଼ିଛି। ଦେଶକୁ ଖାଦ୍ୟଶସ୍ୟରେ ଆତ୍ମନିର୍ଭରଶୀଳ କରିବାର ଲକ୍ଷ୍ୟ ରଖି ଅତିତରେ ସରକାର ଦେଶରେ କେବଳ ଧାନ ଓ ଗହମ ଚାଷ ପାଇଁ ହିଁ ଚାଷୀଙ୍କୁ ପ୍ରୋତ୍ସାହିତ କରି ଆସିଛନ୍ତି। ଦେଶର ୨୩ଟି ଫସଲ ପାଇଁ ଏମ୍‌ଏସ୍‌ପି ଘୋଷଣା କରୁଥିଲେ ମଧ୍ୟ କେବଳ ଧାନ ଓ ଗହମକୁ ଛାଡ଼ିଦେଲେ ବଳକା ୨୧ଟି ଫସଲର ସରକାରୀ ସଂଗ୍ରହକୁ ସରକାର ଜାଣିଶୁଣି ଅଣଦେଖା କରି ଆସିଛନ୍ତି।

ଯଦି ସରକାର ଭାବୁଛନ୍ତି ଯେ ଚାଷୀମାନେ ଧାନ ଓ ଗହମ ବଦଳରେ ଅନ୍ୟ ଫସଲର ଚାଷ କରନ୍ତୁ ତାହେଲେ, ତାହେଲେ ସେସବୁ ଫସଲର ଉତ୍ପାଦନ ପାଇଁ ସେମାନଙ୍କୁ ପ୍ରୋତ୍ସାହିତ କରିବାରେ କୌଣସି ଅସୁବିଧା ନାହିଁ। ସେସବୁ ଫସଲ ପାଇଁ ସହାୟକ ଦରକୁ ବୃଦ୍ଧି କରି ତାର ଉପଯୁକ୍ତ ସରକାରୀ ସଂଗ୍ରହର ବ୍ୟବସ୍ଥା କଲେ ଚାଷୀ ନିଶ୍ଚିତ ରୂପେ ସେସବୁ ଫସଲ କରିବାକୁ ଆଗ୍ରହୀ ହେବେ। କିନ୍ତୁ ସେସବୁ ନକରି ସରକାର ନୂଆ କୃଷି ଆଇନ ଜରିଆରେ ଯେଉଁ କମ୍ପାନୀ ଚାଷକୁ ଅନୁମତି ଦେଉଛନ୍ତି ତାରି ଫଳରେ ଦେଶରେ ଭୟଙ୍କର ସମସ୍ୟା ହେବାକୁ ଯାଉଛି। କାରଣ ଏଣିକି ଦେଶର ଖାଦ୍ୟ ସୁରକ୍ଷାକୁ ଦୃଷ୍ଟିରେ ରଖି କେତେ ଜମିରେ ଖାଦ୍ୟଶସ୍ୟ ଏବଂ କେତେ ଜମିରେ ଅନ୍ୟାନ୍ୟ ଅର୍ଥକାରୀ ଫସଲ ହେବ ତାହା ସରକାର ସ୍ଥିର କରିବେନି। ଅତ୍ୟଧିକ ମୁନାଫା ସଂଗ୍ରହ କମ୍ପାନୀମାନଙ୍କ ଏକମାତ୍ର ଲକ୍ଷ୍ୟ ହୋଇଥିବାରୁ ବଜାର ତାହା ବି ବିଶ୍ୱ ବଜାରର ଚାହିଦାକୁ ଦେଖି ସେମାନେ ଫସଲ

ଉତ୍ପାଦନ କରିବାକୁ ଚାଷୀଙ୍କୁ କହିବେ। ଯଦି ବିଶ୍ୱ ବଜାରରେ ରବରର ଚାହିଦା ବଢ଼ିଯିବ ତାହେଲେ ସେମାନେ ଏଠାକାର ଚାଷୀଙ୍କୁ ଅଧିକ ଦାମ୍ ଦେବାର ପ୍ରତିଶ୍ରୁତି ଦେଇ ରବର ଚାଷ କରିବାକୁ କହିବେ। ଏହା ଫଳରେ ଆମ ଦେଶରେ ଫସଲର ଆଉ ସନ୍ତୁଳନ ରହିବନି। ଅତଏବ ବର୍ତ୍ତମାନ ଯେଉଁ ଗୋଟିଏ ଦୁଇଟି ଫସଲର ଉତ୍ପାଦନରେ ଅତ୍ୟଧିକ ବୃଦ୍ଧିର କଥା କହି କୃଷି ଆଇନକୁ ଯଥାର୍ଥ ଦର୍ଶାଉଛନ୍ତି, ତାହା ଶେଷରେ ଦେଶରେ ଖାଦ୍ୟ ସଙ୍କଟର ସବୁଠାରୁ ବଡ଼ ବିପଦ ହୋଇ ବାହାରିବ।

ସରକାରୀ ଘୋଷିତ ଏମ୍‌ଏସ୍‌ପିର ଲାଭ କେବଳ ଧନୀଚାଷୀମାନେ ହିଁ ନେଉଛନ୍ତି ବୋଲି ସରକାରଙ୍କ ପ୍ରଚାର ବି ଭିତ୍ତିହୀନ ଅଟେ। ସରକାରଙ୍କ ତଥ୍ୟ ଅନୁଯାୟୀ ସର୍ବଭାରତୀୟ ସ୍ତରରେ ଏମ୍‌ଏସ୍‌ପିରେ ଧାନ ବିକ୍ରୀ କରୁଥିବା ଚାଷୀଙ୍କ ମଧ୍ୟରେ ମାତ୍ର ୧% ହିଁ ଧନୀ ଚାଷୀ (୧୦ ହେକ୍ଟରରୁ ଅଧିକ ଜମି ଥିବା) ରହିଥିବା ବେଳେ ୭୦% କ୍ଷୁଦ୍ର ଏବଂ ନାମାତ୍ର ଚାଷୀ (୨ ହେକ୍ଟରରୁ କମ୍ ଜମି ଥିବା) ଏବଂ ୨୯% ମଧ୍ୟମ ଚାଷୀ (୨-୧୦ ହେକ୍ଟର ଚାଷ ଜମି ଥିବା) ରହିଛନ୍ତି। ପଞ୍ଜାବ ଓ ହରିଆନାରେ ମଧ୍ୟ ଏମ୍‌ଏସ୍‌ପି ପାଉଥିବା ଚାଷୀଙ୍କ ମଧ୍ୟରେ ଯଥାକ୍ରମେ ୩୮% ଓ ୫୮% କ୍ଷୁଦ୍ର ଓ ନାମମାତ୍ର ଚାଷୀ ରହିଛନ୍ତି। ଛତିଶଗଡ଼ ଓ ଓଡ଼ିଶାରେ ଏମ୍‌ଏସ୍‌ପି ପାଉଥିବା ଧାନଚାଷୀଙ୍କ ମଧ୍ୟରେ ୭୦-୮୦% କ୍ଷୁଦ୍ର ଓ ନାମମାତ୍ର ଚାଷୀ ରହିଛନ୍ତି। ଗହମ ସଂଗ୍ରହ କ୍ଷେତ୍ରରେ ବି ସର୍ବଭାରତୀୟ ସ୍ତରରେ ମାତ୍ର ୩% ଧନୀ ଚାଷୀ ହୋଇଥିବା ବେଳେ ୫୬%ରୁ ଅଧିକ କ୍ଷୁଦ୍ର ଓ ନାମମାତ୍ର ଚାଷୀ ଅଟନ୍ତି। ମଧ୍ୟପ୍ରଦେଶରେ ଏମ୍‌ଏସ୍‌ପି ପାଉଥିବା ଗହମ ଚାଷୀଙ୍କ ମଧ୍ୟରେ ୪୫% କ୍ଷୁଦ୍ର ଓ ନାମମାତ୍ର ଚାଷୀ ରହିଛନ୍ତି।

ବର୍ତ୍ତମାନର ଚାଷୀ ଆନ୍ଦୋଳନ ସମ୍ପର୍କରେ ବିଜେପି ଓ ତାର ସରକାରର ଆଉ ଏକ ମିଥ୍ୟା ପ୍ରଚାର ହେଲା, ଏହା ଚାଷୀଙ୍କ ନୁହେଁ ବରଂ ଆଡ଼ତିଆ ବା ଦଲାଲମାନଙ୍କ ଆନ୍ଦୋଳନ। ପ୍ରଥମ କଥା ହେଲା ଦେଶରେ ସରକାରୀ ମଣ୍ଡିରେ କେବଳ ପଞ୍ଜାବ ଓ ହରିଆନାକୁ ଛାଡ଼ିଦେଲେ ଆଉ କେଉଁଠି ଏହି ଆଡ଼ତିଆ ବ୍ୟବସ୍ଥା ନାହିଁ। ସେଠାରେ ଆଡ଼ତିଆମାନେ ହେଉଛନ୍ତି ସରକାରଙ୍କ ଦ୍ୱାରା ନିୟୋଜିତ କମିଶନ ଏଜେଣ୍ଟ୍ ଏବଂ ସେମାନଙ୍କ ସଂଖ୍ୟା ବି ମାତ୍ର କିଛି ହଜାର

ଅଟେ। ସେମାନେ ମଣ୍ଡିରେ କିଣାବିକା ପାଇଁ ବେଆଇନ ଭାବେ ରହି ନାହାନ୍ତି ବରଂ ପେଟ୍ରୋଲ, ଗ୍ୟାସ୍, ଅସ୍ତ୍ରଶସ୍ତ୍ର ଆଦିର କିଣାବିକାରେ ସରକାର ଏଜେଣ୍ଟ୍ ନିଯୁକ୍ତ କଲାଭଳି ଆଡ଼ତିଆମାନେ ବି ମଣ୍ଡିରେ ଚାଷୀ ଓ ବ୍ୟବସାୟୀ ବା କମ୍ପାନୀଙ୍କ ମଧ୍ୟରେ କମିଶନ ଏଜେଣ୍ଟ ଭାବେ ସରକାରଙ୍କ ସ୍ୱୀକୃତିରେ ରହିଥାନ୍ତି। ଏମାନେ ଚାଷୀଙ୍କ ଠାରୁ ନୁହେଁ ବରଂ ଉତ୍ପାଦ ପାଇଁ ଚାଷୀ ଏମ୍ଏସ୍ପି ପାଇବା ପରେ ବେପାରୀଙ୍କ ଠାରୁ କିଛି ପ୍ରତିଶତ କମିଶନ ନେଇଥାନ୍ତି।

ଏହା ସତ ଯେ ଆଜିକାଲି ଏହି ଆଡ଼ତିଆମାନେ ଚାଷୀଙ୍କୁ ସେମାନଙ୍କ ଆବଶ୍ୟକତା ସମୟରେ ଋଣ ଯୋଗାଇ ଫସଲ ଆଦାୟ ସମୟରେ ସୁଧ ସହ ଆଦାୟ କରିଥାନ୍ତି। ଏହିଭଳି ମହାଜନୀ କାରବାର ସେମାନଙ୍କ ଆନୁଷ୍ଠାନିକ କାମ ନୁହେଁ। ବରଂ କୃଷିକ୍ଷେତ୍ରରେ ବ୍ୟାଙ୍କ୍ ଋଣ ଦେବା କମ୍ କରିବା ପରେ ପଞ୍ଜାବର ଗାଁମାନଙ୍କରେ ଆଡ଼ତିଆମାନଙ୍କ ଏହି ନୂଆ ଭୂମିକାଟି ବୃଦ୍ଧି ପାଇଛି। ଲୋକେ ରାତି ଅଧରେ କୌଣସି ଅର୍ଥର ଆବଶ୍ୟକତା ପଡ଼ିଲେ ଗାଁର ଆଡ଼ତିଆ ଠାରୁ ଋଣ ନେବାକୁ ବାଧ୍ୟ ହୋଇଥାନ୍ତି। ଅତିତରେ କଂଗ୍ରେସ ନେତୃତ୍ୱାଧିନ ଉପା ସରକାର ମଣ୍ଡି ବ୍ୟବସ୍ଥାରେ ସଂସ୍କାର ଆଣିବା ନାଁରେ ବଡ଼ କମ୍ପାନୀଙ୍କ ପ୍ରବେଶ ପାଇଁ ଉଦ୍ୟମ କରୁଥିବା ବେଳେ ସଂସଦରେ ତତ୍କାଳିନ ବିରୋଧୀ ଦଳର ନେତ୍ରୀ ସୁଷମା ସ୍ୱରାଜ ଏବଂ ଅରୁଣ ଜେଟଲୀ ଖୋଲାଖୋଲି ଭାବେ ଏହାର ବିରୋଧ କରି ପଞ୍ଜାବର ଆଡ଼ତିଆମାନଙ୍କ ସପକ୍ଷରେ ଜୋରଦାର ଯୁକ୍ତି କରିଥିଲେ। ୟୁ ଟ୍ୟୁବ୍‌ରେ ଉପଲବ୍ଧ ସେମାନଙ୍କ ଭାଷଣରେ ସୁଷମା ସ୍ୱରାଜ ଆଡ଼ତିଆମାନଙ୍କୁ ଚାଷୀଙ୍କ ଏଟିଏମ୍ ବୋଲି କହୁଥିବା ଦେଖାଯାଇଛି। ଅତଏବ ସେତେବେଳେ ଆଡ଼ତିଆମାନଙ୍କ ପ୍ରଶଂସାରେ ଶତମୁଖ ହୋଇଥିବା ବିଜେପି ନେତାମାନେ ଆଜି ସେମାନଙ୍କୁ ଦଲାଲ କହି ଚାଷୀ ଆନ୍ଦୋଳନକୁ ବଦନାମ କରିବା ଲଜ୍ଜାଜନକ ଅଟେ। ଦ୍ୱିତୀୟତଃ ପଞ୍ଜାବର ମଣ୍ଡିରେ ଆଡ଼ତିଆଙ୍କ ଉପସ୍ଥିତି ସତ୍ତ୍ୱେ ସେଠାକାର ଚାଷୀ ତାର ଫସଲର ଏମ୍ଏସ୍ପି ପାଇବାରେ ଅସୁବିଧା ହେଉନାହିଁ। ବରଂ ଏହାର ବିପରୀତ ମଣ୍ଡି ବାହାରେ ବିନା ଆଡ଼ତିଆରେ ଯେଉଁଠି ବ୍ୟବସାୟୀମାନେ ଚାଷୀଙ୍କ ଠାରୁ ଉତ୍ପାଦକୁ କିଣୁଛନ୍ତି ସେଠାରେ ସେମାନେ ଏମ୍ଏସ୍ପି ଠାରୁ କମ୍ ମୂଲ୍ୟ ଦେବା ଦେଖିବାକୁ ମିଳୁଛି।

ଅତଏବ ପଞ୍ଜାବର ମଣ୍ଡି ବ୍ୟବସ୍ଥାରେ ଆଡ଼ତିଆମାନେ ଚାଷୀଙ୍କ ପାଇଁ ସମସ୍ୟା ନୁହଁନ୍ତି ବରଂ ବ୍ୟବସାୟୀ ବା କମ୍ପାନୀଙ୍କ ମୁନାଫାରେ ପ୍ରତିବନ୍ଧକ ଅଟନ୍ତି। କୃଷିଜାତ ଦ୍ରବ୍ୟର ବିପଣନରେ ରହିଥିବା ଏହି ଆଡ଼ତିଆଙ୍କ ପରି ଅପେକ୍ଷାକୃତ ଛୋଟ ଦଲାଲଙ୍କୁ ହଟାଇ ସରକାର ଆମ୍ବାନୀ, ଆଦାନୀ ପରି ବଡ଼ ବଡ଼ ଦଲାଲମାନଙ୍କୁ ଆଣିବାକୁ ଚାହୁଁଛନ୍ତି।

ସରକାର ବାରମ୍ବାର ସେମାନଙ୍କ ନାଁ କହି ଦେଶର କୋଟି କୋଟି ଚାଷୀଙ୍କ ନ୍ୟାୟସଙ୍ଗତ ଆନ୍ଦୋଳନକୁ ବଦନାମ୍ କରିବାକୁ ଚେଷ୍ଟା କରୁଛନ୍ତି। ଜାଣିବା ଦରକାର ଯେ ପଞ୍ଜାବରେ ଚାଷୀମାନଙ୍କ ଆନ୍ଦୋଳନ ଯେଉଁ ଜନ ଆନ୍ଦୋଳନର ରୂପ ନେଇଛି ତାହା କିଛି ହଜାର ଆଡ଼ତିଆଙ୍କ ଯୋଗୁଁ ନୁହେଁ ବରଂ କେନ୍ଦ୍ର ସରକାରଙ୍କ କୃଷକ ବିରୋଧୀ ଏବଂ କର୍ପୋରେଟ୍ ସପକ୍ଷବାଦୀ କଳା କୃଷି ଆଇନ ବିରୁଦ୍ଧରେ ଚାଷୀ ଓ ପଞ୍ଜାବବାସୀଙ୍କ ସ୍ୱାଭାବିକ ପ୍ରତିକ୍ରୀୟା ଅଟେ। କୃଷକମାନଙ୍କ ଆନ୍ଦୋଳନକୁ ସେଠାକାର ସମାଜର ସବୁ ଶ୍ରେଣୀର ଲୋକ ସମର୍ଥନ ଜଣାଇବା ପରି ଆଡ଼ତିଆମାନେ ମଧ୍ୟ ହୁଏତ ସମର୍ଥନ କରୁଥାଇପାରନ୍ତି କିନ୍ତୁ ତାହା କଦାପି ଆଡ଼ତିଆଙ୍କ ଦ୍ୱାରା ପ୍ରାୟୋଜିତ ଆନ୍ଦୋଳନ ନୁହେଁ। ଯଦି ସେପରି ହୋଇଥାନ୍ତା, ପଞ୍ଜାବ ଓ ହରିଆନାକୁ ଛାଡ଼ିଦେଲେ ଦେଶର ଅନ୍ୟ ରାଜ୍ୟମାନେ ଯେଉଁଠି କୌଣସି ଆଡ଼ତିଆ ନାହାନ୍ତି, ସେଠାକାର କୃଷକମାନେ କିପରି ଆନ୍ଦୋଳନରେ ସାମିଲ ହୋଇଛନ୍ତି ?

## ବଜାରରେ ବୃହତ୍ତ କମ୍ପାନୀଙ୍କ ଏକାଧିକାର ପ୍ରତିଷ୍ଠା ହେବ

ନୂଆ ଆଇନର ସୁଯୋଗ ନେଇ ମନସାଣ୍ଟୋ, ପେପସୀ, ବେୟାର୍ସ, କାରଗିଲ୍, ମେରିକେ, ନେସଲେ, ରାଲିସ୍, ୱାଲମାର୍ଟ, ରିଲାଏନ୍ସ ଫ୍ରେସ୍, ଆଦାନୀ ଲଜିଷ୍ଟିକସ୍ ପରି କୃଷି ଉତ୍ପାଦର ବ୍ୟବସାୟ ଓ ପ୍ରକ୍ରୀୟାକରଣ କରୁଥିବା ଅସଂଖ୍ୟ କର୍ପୋରେଟ୍ କମ୍ପାନୀ କୃଷିରେ ନିଜର ବିପୁଳ ପୁଞ୍ଜିନିବେଶ କରିବେ। କୃଷି ଉତ୍ପାଦର ବ୍ୟବସାୟରେ ଏଭଳି ବିଶାଳକାୟ କମ୍ପାନୀଙ୍କ ପ୍ରବେଶ ଏକ ଭୟଙ୍କର ପରିସ୍ଥିତି ସୃଷ୍ଟି କରିବ। କୃଷକ ନିଜର ସ୍ୱାଧୀନତା ହରାଇବା ସହ ଦେଶର କୃଷିକ୍ଷେତ୍ର ଖୁବ୍‌ଶୀଘ୍ର କର୍ପୋରେଟ୍‌ଙ୍କ ଚରାଭୂଇଁରେ ପରିଣତ ହେବ। ଦେଶର କୃଷି ଉତ୍ପାଦର

ବ୍ୟବସାୟରେ କର୍ପୋରେଟ୍ ଓ ଛୋଟ ଚାଷୀର ଏହି ଅସମାନ ସ୍ଥିତିରେ ଚାଷୀଟି ଯେ ନିଜର ମୂଲଚାଲ କ୍ଷମତା ହରାଇ ଏକଦମ୍ ଅସହାୟ ହୋଇଯିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ।

ଦେଶରେ କୃଷିର ବିକାଶ ଲାଗି ଗୋଦାମ, ଶୀତଳଭଣ୍ଡାର, ଜଳସେଚନ ଆଦି କୃଷି ଭିତ୍ତିଭୂମିରେ ବିପୁଳ ସରକାରୀ ନିବେଶ ପାଇଁ କୃଷକ ସଙ୍ଗଠନମାନେ ଦାବୀ କରି ଆସିଛନ୍ତି। କିନ୍ତୁ ଗତ ଛଅ ବର୍ଷର ଶାସନ କାଳରେ ଦେଶର କୃଷି ଭିତ୍ତିଭୂମିର ବିକାଶ ପାଇଁ ଆବଶ୍ୟକୀୟ ପୁଞ୍ଜିନିବେଶ କରିବାରେ ବିଫଳ ହୋଇଥିବା ସରକାର ଏବେ ସେହି ଦାୟୀତ୍ୱରୁ ନିଜକୁ ଓହରାଇ ତାକୁ କର୍ପୋରେଟ୍‌ଙ୍କ ହାତରେ ଛାଡ଼ି ଦେବାକୁ ଯାଉଛନ୍ତି। ଦେଶରେ ଅଧିକ ଶୀତଳ ଭଣ୍ଡାର, ଗୋଦାମ, କୃଷି ଭିତ୍ତିଭୂମି ଏବଂ ପ୍ରକ୍ରୀୟାକରଣ ଶିଳ୍ପ ପାଇଁ ଘରୋଇ ପୁଞ୍ଜିକୁ ଆକୃଷ୍ଟ କରିବା ପାଇଁ ଏହି ଆଇନ କରାଯାଇଛି ବୋଲି ସରକାର ଯୁକ୍ତି କରିଛନ୍ତି। ଘରୋଇ କମ୍ପାନୀମାନେ ଯଦିବା ପୁଞ୍ଜିନିବେଶ କରି କୃଷି ଭିତ୍ତିଭୂମି ନିର୍ମାଣ କରିବେ ତାହା କଦାପି ସାଧାରଣ କୃଷକଙ୍କ ବ୍ୟବହାର ପାଇଁ ନୁହଁ। ସେମାନଙ୍କ ଗୋଦାମ କିମ୍ବା ଶୀତଳ ଭଣ୍ଡାରରେ ସାଧାରଣ ଚାଷୀଙ୍କ କୃଷି ଉତ୍ପାଦ ନୁହେଁ ବରଂ ସେମାନଙ୍କ ଦ୍ୱାରା ସଂଗୃହୀତ ହୋଇଥିବା କୃଷି ଉତ୍ପାଦ ହିଁ ଗଚ୍ଛିତ ରହିବ। ବହୁ ପୂର୍ବରୁ ସରକାର ଏସବୁ କ୍ଷେତ୍ରରେ ୧୦୦% ବିଦେଶୀ ପୁଞ୍ଜି ନିବେଶକୁ ଅନୁମତି ଦେଇ ସାରିଥିବାରୁ ଏ କ୍ଷେତ୍ରରେ ବିଶାଳକାୟ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଆସିବାର ସମ୍ଭାବନା ରହିଛି। ତେବେ ସରକାରଙ୍କ ଉପରୋକ୍ତ ପଦକ୍ଷେପ ଦ୍ୱାରା ଦେଶର କୃଷକ ଏବଂ ଉପଭୋକ୍ତାଙ୍କର ତ କୌଣସି ଲାଭ ହେବାର ନାହିଁ ବରଂ କୃଷି ଉତ୍ପାଦର ବ୍ୟବସାୟ କରୁଥିବା ୱାଲମାର୍ଟ, ସିନ୍‌ଜେଂଟା ଓ ରିଲାଏନ୍ସ ପରି ଦେଶୀ ବିଦେଶୀ ବୃହତ୍ତ କମ୍ପାନୀମାନଙ୍କ ସୀମାହୀନ ଲାଭର ବାଟ ଖୋଲିଯିବ। ଏଣିକି ସେମାନେ ବିନା ପ୍ରତିବନ୍ଧକରେ ବିପୁଳ ପରିମାଣର କୃଷି ଉତ୍ପାଦକୁ ଚାଷୀଙ୍କ ଠାରୁ ଶସ୍ତା ଦାମରେ ସଂଗ୍ରହ କରି ସେସବୁକୁ ନିଜ ଗୋଦାମରେ ମାସ ମାସ ଧରି ଗଚ୍ଛିତ ରଖି ପାରିବେ। ଜମାଖୋରୀ ଜରିଆରେ ବଜାରରେ କୃତ୍ରିମ ଅଭାବ ସୃଷ୍ଟି କରି ପରେ ମନଇଚ୍ଛା ଦାମରେ ଦେଶ ଭିତରେ ସେସବୁକୁ ବିକ୍ରୀ କରିବାକୁ ସୁଯୋଗ ପାଇବେ।

## କୃଷିଜାତ ଦ୍ରବ୍ୟର କାରବାରରେ ନୂଆ ମଧ୍ୟସ୍ଥ ସୃଷ୍ଟି ହେବେ

ଏହି ଆଇନ ଆଣିବା ପଛରେ ସରକାରଙ୍କ ଏକ ବଡ଼ ପ୍ରଚାର ହେଲା ଯେ ଦେଶରେ କୃଷିଜାତ ଦ୍ରବ୍ୟର କାରବାରରେ ରହିଥିବା ମଧ୍ୟସ୍ଥି ବା ଦଲାଲ ବ୍ୟବସ୍ଥାର ଉଚ୍ଛେଦ ହେବ। ଚାଷୀ ସିଧାସଳଖ ଖାଉଟୀଙ୍କୁ ନିଜର ଉତ୍ପାଦକୁ ବିକ୍ରୀ କରି ପାରିବେ। ଶୁଣିବାକୁ ଭଲ ଲାଗୁଥିବା ଏହି କଥାଟି କିନ୍ତୁ ସମ୍ପୁର୍ଣ୍ଣ ସତ୍ୟ ନୁହେଁ। ଏହା ସତ ଯେ ଚାଷୀ ଆଦାୟ କରୁଥିବା ତାର ଫସଲକୁ ବଜାରରେ ଯେତେ ଦାମ୍‌ରେ ବିକ୍ରୀ କରେ ତାହା ଖାଉଟି ପାଖକୁ ଗଲା ବେଳେ ତାର ଦର ବହୁଗୁଣ ହୋଇଯାଇଥାଏ। ଦରରେ ଏଭଳି ଅତ୍ୟଧିକ ଫରକ ଆସିବା ପଛରେ ଚାଷୀ ଏବଂ ଖାଉଟି ମଝିରେ ରହିଥିବା ଅନେକ ମଧ୍ୟବର୍ତ୍ତୀ ସ୍ତରକୁ ଦାୟୀ କରାଯାଇଥାଏ, ଯେଉଁମାନେ ଉଭୟ ଚାଷୀ ଓ ଖାଉଟୀଙ୍କୁ ଶୋଷଣ କରିଥାନ୍ତି। କିନ୍ତୁ ଏଠାରେ ପ୍ରଶ୍ନ ଉଠେ, କ'ଣ ସରକାରଙ୍କ ନୂତନ ଆଇନରେ ଚାଷୀ ଏବଂ ଖାଉଟି ମଧ୍ୟରେ ରହିଥିବା ମଧ୍ୟବର୍ତ୍ତି ସ୍ତରଗୁଡ଼ିକୁ ସମ୍ପୂର୍ଣ୍ଣ ହଟାଇ ଖାଉଟିକୁ ସିଧାସଳଖ ଚାଷୀ ବିକ୍ରୀ କରିବାର ବ୍ୟବସ୍ଥା ହେବ ? ଯଦି ସେପରି ହୋଇଥାନ୍ତା ତାହେଲେ ସରକାର ଏ କ୍ଷେତ୍ରରେ ବଡ଼ କମ୍ପାନୀମାନଙ୍କୁ ଆଣୁଛନ୍ତି କାହିଁକି ?

ଅସଲ କଥା ହେଲା, ଚାଷୀ ଓ ଖାଉଟି ମଧ୍ୟରେ ରହିଥିବା ଅନେକ ଗୁଡ଼ିଏ ଛୋଟ ଛୋଟ ସ୍ତର ବା ବ୍ୟବସାୟୀଙ୍କୁ ହଟାଇ ସରକାର ତା ଜାଗାରେ ଗୋଟିଏ ବା ଦୁଇଟି ବଡ଼ କମ୍ପାନୀକୁ ଆଣିବାକୁ ଯାଉଛନ୍ତି। ଅର୍ଥାତ୍ ଏଣିକି ଏକାଧିକ ଛୋଟ ଦଲାଲ ବଦଳରେ ଗୋଟିଏ ବା ଦୁଇଟି ବଡ଼ ଦଲାଲ ଚାଷୀ ଓ ଖାଉଟୀ ମଧ୍ୟରେ ଠିଆ ହେବ। କିନ୍ତୁ କର୍ପୋରେଟ୍‌ମାନେ ବି କ'ଣ ସିଧାସଳଖ ଚାଷୀଙ୍କ ଠାରୁ କୃଷି ଉତ୍ପାଦକୁ କିଣିବେ ? ଆମ୍ବାନୀ, ଆଦାନୀ ଅଥବା ୱାଲମାର୍ଟ କମ୍ପାନୀ ମାଲିକମାନେ ତ ସିଧାସଳଖ ଅଖା ଧରି ଓଡ଼ିଶାର କୌଣସି ଚାଷୀ ପାଖକୁ ତାର କୃଷି ଉତ୍ପାଦକୁ କିଣିବାକୁ ଯିବେନି। ଦେଶର ୮୬% ଭାଗ ଚାଷୀ ଯେହେତୁ ଛୋଟ ଏବଂ ନାମମାତ୍ର ଚାଷୀ ଅଟନ୍ତି, ଅତଏବ ସେମାନଙ୍କ ଉତ୍ପାଦକୁ ସଂଗ୍ରହ କରି କିଣିବାକୁ କମ୍ପାନୀମାନେ ନିଜର ଏଜେଣ୍ଟ ସବୁ ନିଯୁକ୍ତ କରିବେ। ଅତଏବ କୃଷି ଉତ୍ପାଦନ ଠାରୁ ଆରମ୍ଭ କରି କୃଷିଜାତ ଦ୍ରବ୍ୟର କିଣାବିକା, ଜମା, ପ୍ରକ୍ରୀୟାକରଣ ଏବଂ

ଖୁଚୁରା ବିକ୍ରୀ ପର୍ଯ୍ୟନ୍ତ ସବୁଠି ଛୋଟ ଛୋଟ ବ୍ୟବସାୟୀଙ୍କ ବଦଳରେ ବୃହତ୍ତାକାୟ କମ୍ପାନୀ ଏବଂ ସେମାନଙ୍କ ଦଲାଲମାନେ ରହି ପୂର୍ବାପେକ୍ଷା ଅଧିକ ଶୋଷଣ କରିବେ ।

ନୂଆ କୃଷି ଆଇନର ଅନେକ ପୂର୍ବରୁ ଦେଶରେ ବଡ଼ ବଡ଼ ଖୁଚୁରା ଷ୍ଟୋର ଖୋଲି ଖାଉଟିଙ୍କୁ ବିକ୍ରୀ କରିବା ପାଇଁ ବଡ଼ ଖୁଚୁରା କମ୍ପାନୀଙ୍କୁ ଅନୁମତି ଦିଆଯାଇସାରିଛି । କିଛି କମ୍ପାନୀ ଏଠାରେ ମଲ୍ ବା ବଡ଼ ଷ୍ଟୋର ଖୋଲି ନିଜର ବ୍ୟବସାୟ ଆରମ୍ଭ କରିଥିବା ବେଳେ ଆଉ କେତେକ ବର୍ତ୍ତମାନର ଆଇନକୁ ଅପେକ୍ଷା କରିଥିଲେ । ସରକାରଙ୍କ ଏହି ପରିବର୍ତ୍ତିତ ନୀତି ଫଳରେ ୱାଲମାର୍ଟ, ଟେସଲା, ମେଟ୍ରୋ ପରି ବିଶ୍ୱର ବଡ଼ ବଡ଼ ଖୁଚୁରା କମ୍ପାନୀ ଆସିବେ । ନୂଆ ଆଇନ ପ୍ରକାରେ ସେମାନେ ଚାଷୀଙ୍କ ଠାରୁ ସିଧାସଳଖ ଉତ୍ପାଦକୁ ସଂଗ୍ରହ କରିବେ ଏବଂ ତାକୁ ପ୍ରକ୍ରୀୟାକରଣ କରି ନିଜର ବିଶାଳକାୟ ଖୁଚୁରା ଷ୍ଟୋର ଜରିଆରେ ଖାଉଟୀଙ୍କୁ ବିକ୍ରୀ କରିବେ । ଏଠାରେ ଜାଣି ରଖିବା ଦରକାର ଯେ ଏସବୁ କମ୍ପାନୀମାନଙ୍କ ବାର୍ଷିକ ବଜେଟ୍ ବିଶ୍ୱର ଅନେକ ଦେଶର ବାର୍ଷିକ ବଜେଟ ଠାରୁ ବି ବଡ଼ ଅଟେ । ସେମାନେ ନିଜର ବିପୁଳ ପୁଞ୍ଜି ବଳରେ ବଜାରର ନିୟମକୁ ଏପଟ ସେପଟ କରି ଶେଷରେ ସମଗ୍ର ବଜାରକୁ କବ୍ଜା କରିନେବେ । ଅତିତରେ ଆମ ଦେଶରେ ପେପ୍‌ସୀ ଓ କୋକାକୋଲା ପରି ବହୁରାଷ୍ଟ୍ରୀୟ ମୃଦୁ ପାନୀୟ କମ୍ପାନୀଙ୍କୁ ଅନୁମତି ଦେବା ପରେ କ'ଣ ହୋଇଛି ସେ ସମ୍ପର୍କରେ ଆମେ ସମସ୍ତେ ଭଲା ଅଧିକେ ଅବଗତ ଅଛେ । ନିଜର ପୁଞ୍ଜି ବଳରେ ଏହି କମ୍ପାନୀମାନେ ଭାରତକୁ ଆସିବା ପରେ ଏଠାରେ ପୂର୍ବରୁ ରହିଥିବା ସମସ୍ତ ଦେଶୀୟ କମ୍ପାନୀମାନଙ୍କୁ ଅକ୍ତିଆର କରିନେଲେ ଅଥବା ସେମାନଙ୍କୁ ଆର୍ଥିକ ଭାବେ ଦୋବାଳିଆ କରି ଦେଶର ମୃଦୁ ପାନୀୟର ପୁରା ବଜାରଟିକୁ ଦଖଲ କରି ନେଇଗଲେ ।

ସରକାର 'ଏକ ଦେଶ, ଏକ କୃଷି ବଜାର' ନାଁରେ କୃଷି ଉତ୍ପାଦ ବାଣିଜ୍ୟ ଓ ବ୍ୟାପାର ଅଧ୍ୟାଦେଶ – ୨୦୨୦କୁ ଜାରୀ କରିବା ସହିତ ଇ-ନାମ୍ ବ୍ୟବସ୍ଥାର ଘୋଷଣା କରିଛନ୍ତି । ଏହାଦ୍ୱାରା କୌଣସି ପ୍ରକାର ଆଂଚଳିକ ପ୍ରତିବନ୍ଧକ ବିନା ଏଣିକି ଯେକୌଣସି ରାଜ୍ୟରେ ବି କୃଷିଜାତ ଦ୍ରବ୍ୟର କ୍ରୟ ବିକ୍ରୟ କରାଯାଇପାରିବ ।

ଏହି ନିଷ୍ପତ୍ତିର ଫାଇଦାଟି ଦେଶର ଚାଷୀଙ୍କ ବଦଳରେ କେବଳ ବୃହତ କମ୍ପାନୀମାନଙ୍କୁ ହିଁ ମିଳିବାକୁ ଯାଉଛି। ସେମାନେ ନିଜର ବିପୁଳ ପୁଞ୍ଜି ବଳରେ ଦେଶର ବିଭିନ୍ନ ପ୍ରାନ୍ତରୁ ସର୍ବାଧିକ ଶସ୍ତାରେ ବିପୁଳ ପରିମାଣରେ କୃଷି ଉତ୍ପାଦକୁ ଏଣିକି ବିନା ପ୍ରତିବନ୍ଧକରେ କିଣିପାରିବେ। ବିଶେଷ କରି ଫସଲର ଅମଳ ସମୟରେ ଯେତେବେଳେ ଚାଷୀ ନିଜର ଉତ୍ପାଦକୁ ଯେତେ ଶୀଘ୍ର ପାରିବ ବିକ୍ରୀ କରିବାକୁ ବ୍ୟସ୍ତ ଥିବ, ସେତେବେଳେ ସେମାନେ ନିଜର ବିପୁଳ ପୁଞ୍ଜି ବଳରେ କୃତିମ ଭାବେ ଦାମକୁ କମାଇ ଚାଷୀଙ୍କୁ ଅଭାବୀ ବା ଶସ୍ତାରେ ବିକ୍ରୀ ପାଇଁ ବାଧ୍ୟ କରିବେ। କେବଳ ସେତିକି ନୁହେଁ ନିଜର ବିଶାଳକାୟ ଗୋଦାମ ତଥା ଶୀତଳ ଭଣ୍ଡାରମାନଙ୍କରେ ସେସବୁ ଉତ୍ପାଦକୁ ମାସ ମାସ ଧରି ଗଚ୍ଛିତ କରି ରଖିପାରିବେ। ବଜାରରେ ଦରବୃଦ୍ଧି ଘଟିଲେ ଅଥବା କୃତ୍ରିମ ଅଭାବ ସୃଷ୍ଟି କରି ସେମାନେ ସେସବୁକୁ ବିକ୍ରୀ କରି ବିପୁଳ ମୁନାଫା କମାଇବେ।

ଏହା ସତ ଯେ ସରକାରଙ୍କ ବିଫଳତା ଲାଗି ଦେଶର ଏକ ବଡ଼ ଭାଗ ଚାଷୀ ନିଜର କୃଷି ଉତ୍ପାଦକୁ ମଣ୍ଡିରେ ଏମ୍‌ଏସ୍‌ପିରେ ବିକ୍ରୀ କରିବାକୁ ସକ୍ଷମ ହୋଇପାରୁନଥିଲେ। କିନ୍ତୁ ଦେଶରେ ସରକାରୀ ଏମ୍‌ଏସ୍‌ପିର ଏକ ସମାନ୍ତରାଳ ବ୍ୟବସ୍ଥା ରହିଥିବାରୁ ଘରୋଇ ବେପାରୀଙ୍କୁ ନିଜର ଉତ୍ପାଦ ବିକ୍ରୀ କଲା ବେଳେ ବି ଚାଷୀର ମୂଲଚାଲ କ୍ଷମତାଟି କିଛି ମାତ୍ରାରେ ରହୁଥିଲା। ଯେଉଁ ଯେଉଁ ଅଞ୍ଚଳରେ ସରକାରୀ ମଣ୍ଡି ରହିଛି ଏବଂ ସେଠାରେ କୃଷି ଉତ୍ପାଦର କିଣାବିକା ହେଉଛି ସେଠାକାର ଚାଷୀମାନେ ନିଜର ଉତ୍ପାଦ ପାଇଁ ଖୋଲା ବଜାରରେ ବି ଅପେକ୍ଷାକୃତ ଅଧିକ ଦାମ୍ ପାଉଥିବା କଥା ବିଭିନ୍ନ ଅଧ୍ୟୟନରୁ ଜଣା ପଡ଼ିଛି। ଅତଏବ ନୂଆ ଆଇନର ପରିଣାମ ସ୍ୱରୂପ ଯଦି ଭବିଷ୍ୟତରେ ଦେଶର ସରକାରୀ ମଣ୍ଡି ଏବଂ ଏମ୍‌ଏସ୍‌ପି ବ୍ୟବସ୍ଥା ଅକାମୀ ହୋଇଯାଏ, ତାହେଲେ ଚାଷୀ ତାର କୃଷି ଉତ୍ପାଦର ବିକ୍ରୀ ବେଳେ ଭୟଙ୍କର ସଙ୍କଟର ସମ୍ମୁଖୀନ ହେବ। କୃଷି ଉତ୍ପାଦର ମୂଲ୍ୟହ୍ରାସ ପାଇବା ସହ ଚାଷୀ ଅଭାବୀ ବିକ୍ରୀର ଶୀକାର ହେବ।

## ଖାଦ୍ୟ ସୁରକ୍ଷା ଯୋଜନା ବନ୍ଦ ହେବ

ଖାଦ୍ୟଶସ୍ୟର ସଂଗ୍ରହ ଓ ଗଣବଣ୍ଟନ ବ୍ୟବସ୍ଥା ପରସ୍ପର ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଏବଂ ପରସ୍ପରର ପରିପୂରକ ଅଟନ୍ତି। ସରକାର ସମର୍ଥନ ମୂଲ୍ୟ ବା ଏମ୍‌ଏସ୍‌ପି ଦେଇ ଚାଷୀଙ୍କ ଠାରୁ ଖାଦ୍ୟଶସ୍ୟ ସଂଗ୍ରହ କରୁଥିବାରୁ ତାକୁ ପ୍ରତିମାସରେ ଦେଶର ଗରିବ ଲୋକଙ୍କ ମଧ୍ୟରେ ରିହାତି ଦରରେ ବାଣ୍ଟି ପାରୁଛନ୍ତି। ଯଦି ସରକାରୀ ସଂଗ୍ରହ ବ୍ୟବସ୍ଥା ବନ୍ଦ ହୁଏ, ତାହେଲେ ସରକାର ଲୋକଙ୍କୁ ଦେବା ପାଇଁ ସେସବୁ ଆଣିବେ ବା କେଉଁଠୁ ? ଏ କ୍ଷେତ୍ରରେ ସରକାରଙ୍କ ପାଖରେ ଦୁଇଟି ବିକଳ୍ପ ରହିବ। ଘରୋଇ କମ୍ପାନୀଙ୍କ ଠାରୁ ଚଢ଼ାଦରରେ ଖାଦ୍ୟଶସ୍ୟ ସଂଗ୍ରହ କରିବେ ଅଥବା ଲୋକଙ୍କୁ ଖାଦ୍ୟଶସ୍ୟ ବଦଳରେ ପ୍ରଥମେ ସବ୍‌ସିଡ଼ିର ନଗଦ ହସ୍ତାନ୍ତର କରି ଶେଷରେ ତାକୁ ବନ୍ଦ କରିଦେବେ। ଉଭୟ ପରିସ୍ଥିତିରେ ଘରୋଇ କମ୍ପାନୀମାନେ ହିଁ ଲାଭାନ୍ୱିତ ହେବେ।

ଆମ ଦେଶରେ ଖାଦ୍ୟ ସୁରକ୍ଷା ଆଇନ ଅର୍ନ୍ତଗତ ସମାଜର ଗରିବ ଲୋକଙ୍କୁ ଯେଉଁ ଟଙ୍କାକିଆ ଚାଉଳ ବା ଗହମ ପ୍ରଦାନ କରାଯାଉଛି, ତାକୁ ବନ୍ଦ କରିବାକୁ ବିଶ୍ୱ ବାଣିଜ୍ୟ ସଙ୍ଗଠନରେ ବିଶ୍ୱର ଧନୀ ଦେଶମାନେ ବାରମ୍ବାର ଦାବୀ କରି ଆସିଛନ୍ତି। ସେମାନଙ୍କ ଯୁକ୍ତି ହେଉଛି ସରକାର ଶସ୍ତାରେ ଖାଦ୍ୟଶସ୍ୟ ଯୋଗାଇବା ଅବ୍ୟାହତ ରଖିଲେ, ଖାଦ୍ୟଶସ୍ୟର କାରବାର କରୁଥିବା କମ୍ପାନୀମାନେ ବ୍ୟବସାୟ କରିବା ସମ୍ଭବ ହେଉନି। ଏହା କୁଆଡ଼େ ମୁକ୍ତ ବଜାର ନିୟମର ପରିପନ୍ଥୀ। ଅତଏବ ବିଶ୍ୱରେ ଖାଦ୍ୟଶସ୍ୟର କାରବାର କରୁଥିବା ବଡ଼ କମ୍ପାନୀଙ୍କ ବେପାର ପାଇଁ ସରକାର ଦେଶରୁ ଖାଦ୍ୟ ସୁରକ୍ଷା ଯୋଜନାକୁ ସମାପ୍ତ କରିବାକୁ ଆଗରୁ ପ୍ରକ୍ରୀୟା ଆରମ୍ଭ କରିସାରିଛନ୍ତି। ପ୍ରାଥମିକ ଭାବେ ସରକାର କିଛି ରାଜ୍ୟରେ ହିତାଧିକାରୀଙ୍କୁ ଖାଦ୍ୟଶସ୍ୟ ନଦେଇ ତାରି ବଦଳରେ ସେ ବାବଦରେ ସବ୍‌ସିଡ଼ି ଟଙ୍କାକୁ ହିତାଧିକାରୀଙ୍କ ବ୍ୟାଙ୍କ୍ ଖାତାକୁ ନଗଦ ହସ୍ତାନ୍ତର କରିବା ପ୍ରକ୍ରୀୟା ଆରମ୍ଭ କରିସାରିଛନ୍ତି। ଅତଏବ ଦେଶରେ ଖାଦ୍ୟ ସୁରକ୍ଷା ବ୍ୟବସ୍ଥାକୁ ବନ୍ଦ କରିବାକୁ ସରକାର ଆରମ୍ଭ କରିଥିବା ପ୍ରକ୍ରୀୟାଟିକୁ ବର୍ତ୍ତମାନର ଆଇନ ଯେ ସହାୟକ ହେବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ।

## କୃଷକଙ୍କ ମୂଲ୍ୟ ଆଶ୍ୱାସନ(ସଶକ୍ତୀକରଣ ଓ ସୁରକ୍ଷା) ଓ କୃଷିସେବା ଆଇନ – ୨୦୨୦

କୃଷକଙ୍କ ମୂଲ୍ୟ ଆଶ୍ୱାସନ(ସଶକ୍ତୀକରଣ ଓ ସୁରକ୍ଷା) ଓ କୃଷିସେବା ଆଇନ – ୨୦୨୦ ନାଁରେ ସରକାର ଯେଉଁ ତୃତୀୟ ଆଇନଟି ଆଣିଛନ୍ତି ତାହା ଦେଶରେ ଠିକା ଚାଷ ବା କମ୍ପାନୀ ଚାଷକୁ ଅନୁମତି ଦେବାକୁ ଉଦ୍ଦିଷ୍ଟ । ଏହା ଜରିଆରେ ଏଣିକି ବଡ଼ କମ୍ପାନୀମାନେ ଚାଷୀଙ୍କ ଠାରୁ ଜମିକୁ ଚାଷ ପାଇଁ ଠିକାରେ ନେଇ ଅତ୍ୟାଧୁନିକ ପଦ୍ଧତିରେ ନିଜେ ଚାଷ କରିବେ ଅଥବା ଚାଷୀଙ୍କ ସହ ଚୁକ୍ତି କରି ସେମାନଙ୍କ ଜମିରେ ଠିକା ବା ଚୁକ୍ତିଭିତ୍ତିକ ଚାଷ କରାଇବେ । ଚାଷୀମାନଙ୍କ ଠାରୁ ଠିକାରେ ହଜାର ହଜାର ଏକର ଜମି ନେଇ ବିରାଟକାୟ କୃଷି ଫାର୍ମ କରି ଚାଷ କରିବେ । ଏତେ ପରିମାଣରେ ଜମି ଥରେ କମ୍ପାନୀ ହାତକୁ ଚାଲିଗଲେ ସେଥିରେ ନିୟୋଜିତ ଥିବା ଚାଷୀ ଉଭୟ ଜମି ଏବଂ ଚାଷରୁ ବେଦଖଲ ହେବେ । ଆମ ଦେଶର ୮୦%ରୁ ଅଧିକ ଚାଷୀ କ୍ଷୁଦ୍ର, ନାମମାତ୍ର ଓ ଭାଗଚାଷୀ ହୋଇଥିବା ଯୋଗୁଁ ଏତେ ବିପୁଳ ପରିମାଣର ଚାଷଜମି ଥରେ କମ୍ପାନୀ ହାତକୁ ଲିଜ୍ ଜରିଆରେ ଚାଲିଗଲେ ସେମାନେ ନିଜର ଜୀବିକା ହରାଇବେ । ଏପରିକି ସେସବୁ ଜମିରେ ମୂଲ ଲାଗୁଥିବା କୃଷି ଶ୍ରମିକମାନେ ମଧ୍ୟ ନିଜର କାମ ହରାଇବେ । କାରଣ କମ୍ପାନୀମାନଙ୍କ ଏହି କୃଷିଫାର୍ମରେ ଅତ୍ୟାଧୁନିକ ପଦ୍ଧତିରେ ଚାଷ ହେବାକୁ ଥିବାରୁ ସେଥିରେ ଯନ୍ତ୍ରପାତିର ଅଧିକ ବ୍ୟବହାର ହେବ ଏବଂ ଶ୍ରମିକଙ୍କ ଭୂମିକା ସ୍ୱାଭାବିକ ଭାବେ କମ୍ ରହିବ । ଫଳସ୍ୱରୂପ ସେସବୁ ଜମିରେ ଆଗରୁ କାମ ପାଉଥିବା କୃଷି ଶ୍ରମିକମାନେ ମଧ୍ୟ ନିଜର ରୋଜଗାର ହରାଇ ଶେଷରେ ସହରକୁ ଦାଦନ ଶ୍ରମିକ ଭାବେ ଯାଇ ଶସ୍ତାରେ ନିଜର ଶ୍ରମ ବିକ୍ରୀ କରିବାକୁ ବାଧ୍ୟ ହେବେ ।

ଯେଉଁ ଚାଷୀମାନେ କମ୍ପାନୀ ସହିତ ଠିକାରେ ଚୁକ୍ତି କରି ଜମିରେ ନିଜେ ବି ଚାଷ କରିବେ, ସେମାନେ ବି ଠକାମୀ ଓ ଶୋଷଣର ଶୀକାର ହେବେ । ଜଣେ ସାଧାରଣ ଚାଷୀ ଏବଂ ବଡ଼ କମ୍ପାନୀ ମଧ୍ୟରେ ଚୁକ୍ତିଟି ଅସମ ହେବ ଏବଂ ଅସମତାର ଆଧାରରେ ହିଁ ଚାଷୀ ଚାଷ କରିବେ । ଏ କ୍ଷେତ୍ରରେ କର୍ପୋରେଟ୍‌ର ଚାହିଦା ଓ ନିଷ୍ପତ୍ତି ହିଁ ଶେଷ କଥା ହେବ । ଚାଷୀ ଓ କମ୍ପାନୀ ମଧ୍ୟରେ ଜଣେ ମଧ୍ୟସ୍ଥ

ବା ଏଗ୍ରିଗେଟର ରହିବେ। କେଉଁ ଫସଲ ଚାଷ ହେବ, କେଉଁ କିସମର ବିହନ ବ୍ୟବହାର ହେବ, କେତେ ପରିମାଣର ସାର ବ୍ୟବହୃତ ହେବ, ଫସଲର ମାନ କିପରି ହେଲେ କେତେ ଦାମ ମିଳିବ, ଉପରୋକ୍ତ ସବୁକଥା ଚାଷ ପୂର୍ବରୁ କମ୍ପାନୀ ହିଁ ସ୍ଥିର କରି ଚୁକ୍ତି ସମ୍ପାଦନ କରିବ। ସାର, ବିହନ, କୀଟନାଶକ ଓ କୃଷି ଯନ୍ତ୍ରପାତି ଆଦି ସମସ୍ତ ଆନୁଷାଙ୍ଗିକ ଆବଶ୍ୟକୀୟ ସାମଗ୍ରୀକୁ କମ୍ପାନୀ ହିଁ ପଇସା ନେଇ ଚାଷୀକୁ ଯୋଗାଇବ। ବଜାରରେ ସେସବୁ ଶସ୍ତାରେ ମିଳୁଥିଲେ ବି ଚାଷୀ ନିଜେ ତାକୁ ବଜାରରୁ କିଣିବାର ସ୍ୱାଧୀନତା ରହିବନି। ସେସବୁକୁ କମ୍ପାନୀ ଯେଉଁ ଦାମରେ ଯୋଗାଇବ, ତାକୁ ଚାଷୀ ସେହି ଦାମରେ କିଣିବାକୁ ବାଧ୍ୟ ହେବ। ଏହାର ଅର୍ଥ ହେଲା, ଠିକା ଚାଷ ଜରିଆରେ ଏଣିକି ଚାଷ ଆଉ ଚାଷୀ ହାତରେ ନରହି କମ୍ପାନୀର ନିୟନ୍ତ୍ରଣକୁ ଚାଲିଯିବ। ଚାଷୀ ତା'ର ଚାଷର ସ୍ୱାଧୀନତା ହରାଇବ। କମ୍ପାନୀ ଦେଶର ଖାଦ୍ୟ ଆବଶ୍ୟକତାକୁ ଲକ୍ଷ୍ୟ ରଖି ଫସଲ ନିର୍ଦ୍ଧାରଣ କରିବନି ବରଂ ଯେଉଁ ଫସଲ କଲେ ତାକୁ ଅଧିକ ମୁନାଫାରେ ବିକ୍ରୀ କରିପାରିବ, ତାରି ଆଧାରରେ ହିଁ ଫସଲ ସ୍ଥିର କରିବ। ଯଦି କୌଣସି ବିଦେଶୀ ରାଷ୍ଟ୍ରର ବଜାରରେ କୌଣସି ନିର୍ଦ୍ଦିଷ୍ଟ ଫସଲର ଚାହିଦା ରହିଛି ଏବଂ ତାକୁ ବିକ୍ରି କଲେ ତାକୁ ପ୍ରଚୁର ମୁନାଫା ମିଳିବ, କମ୍ପାନୀ ସେହି ଫସଲର ଚାଷ କରିବାକୁ ହିଁ ଚାଷୀକୁ କହିବ। ଏଭଳି ହେଲେ ଦେଶରେ ଖାଦ୍ୟ ନିରାପତ୍ତା ବି ବିପନ୍ନ ହେବାର ସମ୍ଭାବନା ରହିଛି। ଏହି ସୁଯୋଗରେ କମ୍ପାନୀମାନେ ଗୁଣସୂତ୍ର ପ୍ରବର୍ତ୍ତିତ (ଜିଏମ୍) ବିହନକୁ ପ୍ରଚଳନ କରି ଆମର କୃଷିକୁ ସବୁବେଳ ପାଇଁ ନିଜ କବ୍ଜାକୁ ନେଇଯିବେ। ତେବେ ଏଭଳି ବ୍ୟବସ୍ଥାଟି କେବଳ କମ୍ପାନୀଙ୍କ ପାଇଁ ହିଁ ନୁହେଁ, ସରକାରଙ୍କ ପାଇଁ ବି ଲାଭଜନକ ହେବ। କାରଣ ଚାଷୀ ଥରେ ଠିକା କମ୍ପାନୀ ଠାରୁ ବିହନ, ସାର ଓ କୀଟନାଶକ ନେବାକୁ ବାଧ୍ୟ ହୋଇଗଲେ, ସରକାର ସବ୍‌ସିଡ଼ିରେ ସେସବୁ ଚାଷୀକୁ ଯୋଗାଇବା ଆଉ ଦରକାର ପଡ଼ିବନି। ସରକାରଙ୍କ କୃଷି ବାବଦରେ ବ୍ୟୟ କମିଯିବ ଏବଂ ଦାୟୀତ୍ୱମୁକ୍ତ ହୋଇଯିବେ।

ନୂଆ ଆଇନ ଫଳରେ ଯେଉଁ ପରିସ୍ଥିତି ସୃଷ୍ଟି ହେବ, ସେଥିରେ ଚାଷର ଲଗାମଟି ଚାଷୀ ବଦଳରେ କର୍ପୋରେଟଙ୍କ ହାତକୁ ଚାଲିଯିବ। ଠିକାଚାଷ ପାଇଁ

କର୍ପୋରେଟଙ୍କ ହାତକୁ ଥରେ ଜମି ଚାଲିଗଲେ ଚାଷୀ ନିଜ ଜମିରେ କେବଳ ଶ୍ରମିକ ହୋଇଯିବ ଅଥବା ଜମିର ଭଡ଼ା ବାବଦରେ କିଛି ଅର୍ଥ ପାଇବ। କିନ୍ତୁ ଆଦାୟ ଫସଲ ଉପରେ ତା'ର କୌଣସି ଅଧିକାର ରହିବନି। କହିବାକୁ ଗଲେ, ଏହି ଆଇନ ଦେଶର ଚାଷକୁ ଚାଷୀ ହାତରୁ ଛଡ଼ାଇ କର୍ପୋରେଟଙ୍କ ହାତରେ ଟେକିଦେବାର ବନ୍ଦୋବସ୍ତ କରିଦେବ। ଯଦି ଅମଳ ସମୟରେ ସମ୍ପୃକ୍ତ ଫସଲର ବଜାରରେ ଦର ଉଚ୍ଚା ଥାଏ, ତାହେଲେ ହୁଏତ ସେ ଚୁକ୍ତି ମୁତାବକ ଦର ଦେଇପାରେ। ଯେଉଁ ଦାମରେ ଚାଷୀ ତାର କୃଷି ଉତ୍ପାଦକୁ ବିକ୍ରୀ କରିବାକୁ କମ୍ପାନୀ ସହିତ ବୁଝାମଣା ହୋଇଥିବ, ତା'ଠାରୁ ଅଧିକ ଦାମ କେଉଁଠି ମିଳିଲେ ବି ତାକୁ ଚାଷୀ ବିକ୍ରୀ କରିପାରିବନି। କୌଣସି କାରଣରୁ ଯଦି ବଜାରରେ ଉତ୍ପାଦର ଦର ହ୍ରାସଯାଏ, ତାହେଲେ ନିଜର ଉତ୍ପାଦର ମୂଲ୍ୟ ଉପରେ ଚାଷୀର କୌଣସି ନିୟନ୍ତ୍ରଣ ରହିବନି।

କେବଳ ସେତିକି ନୁହେଁ, ଠିକା ଚାଷରେ ଉତ୍ପାଦିତ ଫସଲର ମାନକୁ କମ୍ପାନୀ ଦ୍ୱାରା ମନୋନୀତ ବ୍ୟକ୍ତି ହିଁ ନିର୍ଦ୍ଧାରଣ କରିବ ଏବଂ ତାରି ଆଧାରରେ ହିଁ ସେ ଚାଷୀକୁ ତାର ଦାମ୍ ଦେବ। କମ୍ପାନୀମାନେ ଖରାପ ରଙ୍ଗର, ଆଦ୍ରତା ଆଦି ବିଭିନ୍ନ ଆଳ ଦେଖାଇ ତାକୁ ନିମ୍ନମାନର କହି ଚାଷୀକୁ କମ୍ ଦାମ୍‌ରେ ବିକ୍ରୀ କରିବାକୁ ବାଧ କରିବେ। ଫସଲର ଖରାପ ମାନର ଆଳ ଦେଖାଇ କମ୍ପାନୀ ତାର ପ୍ରତିଶୃତିରୁ ଓହରି ଯାଇ ଫସଲକୁ କିଣିବାକୁ ମନା ବି କରିଦେଇପାରେ। ଏଭଳି ଅବସ୍ଥାରେ ଚାଷୀ ପାଖରେ ଏକମାତ୍ର ରାସ୍ତା ଥିଲା, କୋର୍ଟର ଆଶ୍ରୟ ନେବା। ଅତିତରେ ପଞ୍ଜାବ ଏବଂ ଗୁଜରାଟରେ ପେପସୀ ଓ ରିଲାଏନ୍ସ କମ୍ପାନୀ ସହ ଚୁକ୍ତିଭିତ୍ତିକ ଚାଷ କରିଥିବା ଚାଷୀମାନେ କମ୍ପାନୀର ପ୍ରତାରଣା ବା ପ୍ରତିଶୃତି ଭଙ୍ଗ ବିରୁଦ୍ଧରେ କୋର୍ଟକୁ ଯିବା ଦେଖାଯାଇଥିଲା। କିନ୍ତୁ ବର୍ତ୍ତମାନର ଆଇନରେ ସରକାର କମ୍ପାନୀ ବିରୁଦ୍ଧରେ କୋର୍ଟକୁ ଯିବାର ବାଟକୁ ଚାଷୀ ପାଇଁ ବନ୍ଦ କରି ଦେଇଛନ୍ତି। ଚାଷୀ ଓ କମ୍ପାନୀ ମଧ୍ୟରେ ବିବାଦ କ୍ଷେତ୍ରରେ ଏଣିକି ସ୍ଥାନୀୟ ଉପଖଣ୍ଡସ୍ତରୀୟ ଦଣ୍ଡାଧିକାରୀ ବା ଉପଜିଲ୍ଲାପାଳଙ୍କ ନିକଟରେ ତାର ବିଚାର ହେବ ବୋଲି କୁହାଯାଇଛି। ଆମ ଦେଶରେ ସରକାର ଓ ତାର ଅଧିକାରୀମାନେ ବଡ଼

କମ୍ପାନୀ ଏବଂ ସାଧାରଣ ଚାଷୀଟିଏ ମଧ୍ୟରେ କାହା ସପକ୍ଷରେ ନ୍ୟାୟ ଦେବେ, ତାହା ଆମେ ଭଲକରି ଜାଣିଛେ। ଏପରିକି କୌଣସି ପରିସ୍ଥିତିରେ ଚାଷୀ ସରକାରଙ୍କ ସେହି ଅଫିସର ବିରୁଦ୍ଧରେ ଅଭିଯୋଗ ମଧ କରି ପାରିବନି।

ସରକାର ଠିକା ଚାଷ ଆଇନ ଫଳରେ କୌଣସି ଚାଷୀ ନିଜର ଜମି ହରେଇବାର ସମ୍ଭବନା ନାହିଁ ବୋଲି ପ୍ରଚାର କରୁଛନ୍ତି। ଯଦିଓ ଠିକା କମ୍ପାନୀ ଚାଷୀର ଜମିକୁ ବନ୍ଧକ ରଖିବ ବା ମାଲିକାନା ହାତେଇବ ବୋଲି କୁହାଯାଇନି କିନ୍ତୁ ଆଇନର ଧାରା -୯ରେ କୁହାଯାଇଛି ଯେ ଚାଷୀମାନେ କମ୍ପାନୀର ଚାଷ ଖର୍ଚ୍ଚ ପାଇଁ ଅଥବା କମ୍ପାନୀର କ୍ଷତିପୂରଣ ପ୍ରଦାନ ପାଇଁ ସମାନ୍ତରାଳ ଭାବେ ନିଜର ଜମିକୁ ବ୍ୟାଙ୍କ୍ ବା ଅନ୍ୟ ସଂସ୍ଥା ନିକଟରେ ବନ୍ଧକ ରଖି ଋଣ ନେଇ ପାରିବେ। ସେହିପରି ଆଇନର ଧାରା-୧୪(୨)(ଖ)ରେ କୁହାଯାଇଛି ଯେ ଚାଷୀ କମ୍ପାନୀ ଠାରୁ ନେଇଥିବା ଅଗ୍ରୀମ ଅଥବା ଲଗୁଡି ବାବଦରେ ବକେୟାକୁ ଶୁଝିବାରେ ଅସମର୍ଥ ହେଲେ ତାହା ଏରିଅର୍ ଭାବେ ରହିବ ଏବଂ ଚାଷୀର ଜମିର ବକେୟା ମହାସୁଲ ଭାବେ ବିଚାର କରି ଆଦାୟ କରି କମ୍ପାନୀକୁ ଦିଆଯିବ। ଅତଏବ ଠିକା ଚାଷ ଜରିଆରେ ଚାଷୀକୁ ନିଜର ଜମି ହରାଇବାର ଆଇନଗତ ବ୍ୟବସ୍ଥା କରି ମୋଦି ସରକାର ଚାଷୀର ଆୟର ନୂଆ ସ୍ରୋତ ଖୋଲିବାର ବାହାସ୍ଫୋଟ ମାରୁଛନ୍ତି।

ଠିକା ଚାଷକୁ ନେଇ ସାରା ବିଶ୍ୱରେ ଚାଷୀଙ୍କ ଅଭିଜ୍ଞତାଟି ତିକ୍ତ ରହି ଆସିଛି। ଠିକା ଚାଷ ନାଁରେ ଚାଷୀମାନେ ବଡ଼ ବଡ଼ କମ୍ପାନୀଙ୍କ ଠାରୁ କେବଳ ପ୍ରତାରଣା, ଶୋଷଣର ଶୀକାର ହୋଇ ଫସଲର ଅଭାବୀ ବିକ୍ରୀ କରିବାକୁ ବାଧ୍ୟ ହେବା ଦେଖାଯାଇଛି। କାରଣ ଫସଲର ଉତ୍ପାଦନ ପରେ କମ୍ପାନୀ ଯେଉଁ ଦରରେ ଫସଲକୁ କିଣିବାକୁ ଚୁକ୍ତି କରିଥିବ ସେହି ଦରରେ କିଣିବ ବୋଲି କୌଣସି ଗ୍ୟାରେଣ୍ଟି ନାହିଁ। ଆମ ଦେଶରେ ବି ଯେଉଁ ରାଜ୍ୟମାନଙ୍କରେ ଠିକା ଚାଷକୁ ଅନୁମତି ଦିଆଯାଇଛି, ସେଠାକାର ଚାଷୀଙ୍କ ଅନୁଭୂତିଟି ଭିନ୍ନ ନୁହେଁ। ପଞ୍ଜାବର ସାଙ୍ଗରୁରରେ ଚାଷୀମାନେ ଆଳୁଚାଷ ପାଇଁ ପେପ୍‌ସୀ କମ୍ପାନୀ ସହ ଚୁକ୍ତି କରି ଚାଷ କରି କିଭଳି ପ୍ରତାରିତ ହେଲେ ତାହା ସମସ୍ତେ ଜାଣନ୍ତି। ସେହିଭଳି ଗୁଜରାଟରେ ମଧ୍ୟ କମ୍ପାନୀ ଚାଷୀମାନଙ୍କ ଠାରୁ କୋଟି କୋଟି ଟଙ୍କାର କ୍ଷତିପୂରଣ ଦାବୀ କରି

ସେମାନଙ୍କ ବିରୁଦ୍ଧରେ ମିଥ୍ୟା କେଶ୍ କରିଥିଲା ଏବଂ ପରେ ଚାରିଆଡୁ ବିରୋଧ ହେବାରୁ ପ୍ରତ୍ୟାହାର କରିବାକୁ ବାଧ୍ୟ ହୋଇଥିଲା । ନିକଟରେ ବିଜେପି ଶାସିତ ମଧ୍ୟ ପ୍ରଦେଶରେ ମଧ୍ୟ ଠିକା ଚାଷ କରିଥିବା କମ୍ପାନୀମାନେ ଚାଷୀଙ୍କ ଠାରୁ ମନଇଚ୍ଛା କାଗଜପତ୍ରରେ ଦସ୍ତଖତ ନେବା, ଚାଷୀଙ୍କୁ କୌଣସି ଚୁକ୍ତିପତ୍ର ନଦେବା ଏବଂ ଆଦାୟ ସମୟରେ ଚୁକ୍ତି ମୁତାବକ ଦାମ୍ ନଦେବାର ଅନେକ ଘଟଣା ଉଜାଗର ହୋଇଛି ।

ସବୁଠାରୁ ବଡ଼ କଥା ହେଲା ଠିକା ଚାଷ ମାଧ୍ୟମରେ କମ୍ପାନୀ ବା କର୍ପୋରେଟ୍‌ମାନେ ସମସ୍ତ କୃଷି ଉପକରଣର କ୍ରୟ, ଫସଲ କ୍ରୟ, ଜମା, ପ୍ରକୀୟାକରଣ ଆଦି ସବୁକିଛି କମ୍ପାନୀର ଅଧିନକୁ ଚାଲିଯିବ । ଦେଶର କୃଷି ଏବଂ ଖାଦ୍ୟଶୃଙ୍ଖଳ ଦେଶୀ ବିଦେଶୀ ବୃହତ୍ତ ପୁଞ୍ଜି ଦ୍ୱାରା ନିୟନ୍ତ୍ରିତ ହେବେ । ଏଭଳି ପରିସ୍ଥିତିରେ ଦେଶକୁ ଆତ୍ମନିର୍ଭରଶୀଳ କରିବାର ସରକାରୀ ଘୋଷଣା କେବଳ ଜନଗଣଙ୍କୁ ପ୍ରତାରିତ କରିବାର ସ୍ଲୋଗାନ ମାତ୍ରରେ ସିମୀତ ରହବ । ଚାଷ ବା ଫସଲ ଉପରେ ଚାଷୀର କୌଣସି ସ୍ୱାଧୀନତା ରହିବନି । ବ୍ରିଟିଶ ଶାସନ କାଳରେ ଚାଷୀଙ୍କୁ ବଳପୂର୍ବକ ଭାବେ ବିଦେଶୀ କମ୍ପାନୀମାନେ ଯେଉଁଭଳି ନୀଳ ଚାଷ କରିବାକୁ ବାଧ୍ୟ କରୁଥିଲେ, ନୂଆଁ ଆଇନ ସେହି କଥାକୁ ସ୍ମରଣ କରାଇଦେଉଛି ।

**ଭାଗଚାଷୀଙ୍କ ପାଇଁ ସର୍ବନାଶ**

ଆମ ରାଜ୍ୟର ପ୍ରାୟ ଅର୍ଦ୍ଧେକ ଚାଷଜମି ଭାଗଚାଷରେ ଥିବାରୁ ଏବଂ ଏଯାଏଁ ଭାଗଚାଷୀଙ୍କୁ ଆଇନଗତ ଅଧିକାର ଦିଆଯାଇ ନଥିବାରୁ ସେମାନେ ଚାଷ କରୁଥିଲେ ମଧ୍ୟ ସରକାରଙ୍କ ଦ୍ୱାରା ଚାଷୀର ମାନ୍ୟତା ପାଇ ପାରି ନାହାନ୍ତି । ଏହି କାରଣରୁ ଚାଷ ପାଇଁ ଉଦ୍ଦିଷ୍ଟ ସରକାରୀ ସାର, କୀଟନାଶକ, ବିହନ, ଜଳସେଚନ, ବ୍ୟାଙ୍କ୍ ଋଣ ଓ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଫସଲର କ୍ଷତିପୂରଣ ଏବଂ ଆଦାୟ ଫସଲକୁ ସରକାରୀ ମଣ୍ଡିରେ ବିକ୍ରୀ କରିବାର ଅଧିକାର ଆଦି ସବୁଥିରୁ ଭାଗଚାଷୀମାନେ ବଂଚିତ ହୋଇଥାନ୍ତି । ରାଜ୍ୟର ପ୍ରକୃତ କୃଷକ ଭାବେ ପରିଚିତ ଏତେ ସଂଖ୍ୟକ ଭାଗଚାଷୀଙ୍କ ଏଭଳି ଦୁଃରାବସ୍ଥା ସେମାନଙ୍କୁ ଆର୍ଥିକ ଭାବେ କ୍ଷତିଗ୍ରସ୍ତ କରିବା ସହିତ ରାଜ୍ୟରେ କୃଷି ଉତ୍ପାଦନକୁ ଗୁରୁତ୍ତର ପ୍ରଭାବିତ କରୁଛି ।

ରାଜ୍ୟର ଚାଷୀ ସଂଗଠନମାନେ ଭାଗଚାଷୀଙ୍କୁ ଚାଷୀର ମାନ୍ୟତା ଦେଇ ତାଙ୍କୁ ସରକାରୀ ସୁବିଧା ଯୋଗାଇ ଦେବାକୁ ଏକ ସ୍ୱତନ୍ତ୍ର ଆଇନର ବ୍ୟବସ୍ଥା କରିବାକୁ ଲଗାତାର ଦାବୀ କରି ଆସିଛନ୍ତି । ରାଜ୍ୟରେ ଗତ ଦୁଇ ଦଶକ ଧରି କ୍ଷମତାରେ ଥିବା ବିଜେଡ଼ି ସରକାର ବି ଗତ ନିର୍ବାଚନ ପୂର୍ବରୁ ଭାଗଚାଷୀଙ୍କୁ ଅଧିକାର ଦେବାକୁ ଆଇନରେ ସଂଶୋଧନ କରିବା ନାଁରେ ଏକ ମନ୍ତ୍ରୀସ୍ତରୀୟ କମିଟି ଗଠନ କରିଥିଲେ । କିନ୍ତୁ ରାଜ୍ୟର ଗ୍ରାମାଂଚଳରେ ରହିଥିବା ଶକ୍ତିଶାଳୀ ଜମି ମାଲିକ ଗୋଷ୍ଠୀଙ୍କୁ ଅସନ୍ତୁଷ୍ଟ କରିବାକୁ ସରକାର ଚାହୁଁ ନଥିବାରୁ ଏହି ପ୍ରକୀୟା ଶେଷରେ ପ୍ରହସନରେ ପରିଣତ ହୋଇ ନିର୍ବାଚନ ପରେ ତାର ସମାପ୍ତି ହୋଇଥିଲା । ତେବେ ପରିତାପର ବିଷୟ କେନ୍ଦ୍ର ସରକାର ଠିକା ଚାଷ ନେଇ ଅଧ୍ୟାଦେଶକୁ ଆଣିବାର ଅନେକ ପୂର୍ବରୁ ମଇ ମାସରେ ଲକ୍‌ଡ଼ାଉନ୍ ଚାଲିଥିବା ସମୟରେ ଅତ୍ୟନ୍ତ ତରବରିଆ ଭାବେ ଓଡ଼ିଶା ସରକାର ଏଭଳି ଏକ ଅଧ୍ୟାଦେଶ ଆଣିଥିଲେ । ଯଦିଓ ପରବର୍ତ୍ତି ଅବସ୍ଥାରେ ଉକ୍ତ ଅଧ୍ୟାଦେଶକୁ ବିଧାନସଭାରେ ଉପସ୍ଥାପନ କରିବାରୁ ସରକାର ପଛଘୁଞ୍ଚା ଦେଇଛନ୍ତି, କିନ୍ତୁ କେନ୍ଦ୍ରର ଆଇନ ପରେ ଏହି ବିପଦଟି ସ୍ପଷ୍ଟ ଦିଶୁଛି । ରାଜ୍ୟର ଲକ୍ଷ ଲକ୍ଷ ଭାଗଚାଷୀ କେନ୍ଦ୍ରର ଏହି ଠିକାଚାଷ ଆଇନର ସବୁଠାରୁ ବଡ଼ ଶୀକାର ହେବାକୁ ଯାଉଛନ୍ତି । ଏଣିକି ଜମି ମାଲିକମାନେ ଆଉ ଭାଗଚାଷୀଙ୍କୁ ନିଜ଼ର ଜମି ନଦେଇ କମ୍ପାନୀମାନଙ୍କୁ ଠିକାଚାଷ ପାଇଁ ଲିଜ୍‌ରେ ନିଜର ଜମି ଦେଇଦେବେ । ଏହାଦ୍ୱାରା ସେମାନେ ନିଜ ଜମିର ଲିଜ୍ ବାବଦରେ ପ୍ରତିବର୍ଷ ଭଲ ଅର୍ଥ ପାଇବା ସହ ଚାଷୀକୁ ଦେଇ ଅଯଥାରେ ରିସ୍କ ନେବାରୁ ମୁକ୍ତ ହେବେ । କର୍ପୋରେଟଙ୍କ ସ୍ୱାର୍ଥରେ ତିଆରି ଏହି ଆଇନ ଦେଶର କୋଟି କୋଟି ଭାଗଚାଷୀଙ୍କୁ ଯେ ଚାଷରୁ ବେଦଖଲ କରିଦେବ, ଏହା ନିଶ୍ଚିତ ଅଟେ ।

## ଚାଷୀ ଓ ଚାଷ ଭୟଙ୍କର ସଙ୍କଟ ମୁହଁରେ

ଦେଶରେ କୃଷି କ୍ଷେତ୍ରରେ ସଙ୍କଟ ଯୋଗୁଁ ଲୋକଙ୍କ କୃଷି ଆୟରେ ଲଗାତାର ହ୍ରାସ ପାଇବାରେ ଲାଗିଛି । ଏହାଯୋଗୁଁ ଦେଶର ଜିଡ଼ିପିରେ ମଧ୍ୟ କୃଷିର ଭାଗ ଲଗାତାର କମିବାରେ ଲାଗିଛି । ୨୦୧୪-୧୫ରେ ଦେଶର ଜାତୀୟ ଆମଦାନୀରେ କୃଷିର ଯୋଗଦାନ ୧୮.୨% ଥିବା ବେଳେ ୨୦୧୯-୨୦ରେ

ତାହା ୧୬.୫%କୁ ହ୍ରାସ ପାଇଛି। କୃଷିରେ ବିକାଶ ଦର ବି ୨୦୧୬-୧୭ରେ ୬.୩% ଥିବା ବେଳେ ୨୦୧୯-୨୦ରେ ତାହା ୨.୮%କୁ ହ୍ରାସ ପାଇଛି। ଗ୍ରାମାଞ୍ଚଳର ଲୋକଙ୍କ ଆୟର ୪୦% କୃଷିରୁ ଆସୁଥିବା ବେଳେ ବାକି ୬୦ ଭାଗ ଅଣକୃଷି କାମରୁ ଆସିବା ଦେଖାଯାଇଛି। ଦେଶର କୃଷକ ପରିବାରର ହାରାହାରି ମାସିକ ଆୟ ଟ.୩,୧୪୦ ହୋଇଥିବା ବେଳେ ୫୨% ପରିବାର ଋଣଭାରରେ ବୁଡ଼ି ରହିଛନ୍ତି। କୃଷି ସଙ୍କଟର ସାମନା କରି ନପାରି ପ୍ରତିବର୍ଷ ବହୁସଂଖ୍ୟାରେ କୃଷକ ଚାଷ ଛାଡ଼ି ସହରକୁ ପଳାୟନ କରୁଥିବା ବେଳେ ଅନେକ ଆତ୍ମହତ୍ୟା କରିବାକୁ ବାଧ ହେଉଛନ୍ତି।

ଆମ ଦେଶରେ ୬୮.୬% ଲୋକ ଗ୍ରାମାଞ୍ଚଳରେ ରୁହନ୍ତି। ଜନସଂଖ୍ୟାର ୫୦%ରୁ ଅଧିକ ଅର୍ଥାତ୍ ୬୫କୋଟିରୁ ଅଧିକ ଲୋକ କୃଷି ସହିତ ଜଡ଼ିତ ରହିଛନ୍ତି। ଏହି ବିଶାଳ ସମୂହର ହାରାହାରି ଜମି ମାଲିକାନାର ପରିମାଣ ୦.୩୭ ରହିଛି। ନୀତି ଆୟୋଗର ସଦସ୍ୟ ରମେଶ ଚନ୍ଦ୍ରାଙ୍କ ଦ୍ୱାରା ୨୦୧୫ ମସିହାରେ ପ୍ରକାଶିତ ରିପୋର୍ଟ ଅନୁସାରେ ୦.୬୩ ହେକ୍ଟର ଠାରୁ କମ୍ ଜମିଥିବା ଜଣେ ପରିବାରର ବାର୍ଷିକ ଆୟ ତାକୁ ଦାରିଦ୍ର୍ୟ ସୀମାରୁ ଊର୍ଦ୍ଧ୍ୱରେ ରଖିବାକୁ ଯଥେଷ୍ଟ ନୁହେଁ। ଅତଏବ କୃଷି କାର୍ଯ୍ୟରେ ନିୟୋଜିତ ଦେଶର ଅଧିକାଂଶ ଲୋକ ଯେ ଦାରିଦ୍ର୍ୟ ମଧ୍ୟରେ ରହି ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବାକୁ ଅକ୍ଷମ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ଦେଶର କୃଷକ ପରିବାର ମଧ୍ୟରେ ୫୪.୬% ହେଉଛନ୍ତି କୃଷି ଶ୍ରମିକ ଯେଉଁମାନଙ୍କ ପାଖରେ କୌଣସି ଆଇନଗତ ଅଧିକାର ନାହିଁ।

ଦେଶରେ ବର୍ଦ୍ଧିତ କୃଷି ସଙ୍କଟ ଓ କୃଷକ ଆତ୍ମହତ୍ୟା ପଛରେ ସବୁଠାରୁ ବଡ଼ କାରଣ ହେଉଛି ଚାଷର ଉତ୍ପାଦନ ଖର୍ଚ୍ଚରେ ଲଗାତାର ବୃଦ୍ଧି, କୃଷକଙ୍କ ବର୍ଦ୍ଧିତ ଋଣଭାର ଏବଂ ଉତ୍ପାଦିତ ଫସଲର ଉପଯୁକ୍ତ ଦର ନମିଳିବା, କୃଷିରେ ଆବଶ୍ୟକୀୟ ଭିତ୍ତିଭୂମିର ଅଭାବ ଇତ୍ୟାଦି। ଏହା ବ୍ୟତିତ କୃଷିରେ ସରକାରୀ ପୁଞ୍ଜିନିବେଶର ଲଗାତାର ହ୍ରାସ ଦେଶର କୃଷି ସଙ୍କଟକୁ ଉତ୍କଟ କରିବାରେ ଏକ ବଡ଼ ଭୂମିକା ଗ୍ରହଣ କରିଛି। କିନ୍ତୁ କ୍ରମାଗତ କୌଣସି ବି ସରକାର ଏସବୁ ସମସ୍ୟାର ସମାଧାନ ପାଇଁ କେବେ ଉଦ୍ୟମ କରିବା ଦେଖାଯାଇନି। ଦେଶରେ

କୃଷିର ବିକାଶ ପାଇଁ ଜଳସେଚନ, ଶୀତଳ ଭଣ୍ଡାର, ଗୋଦାମ ଆଦି କୃଷି ଭିତ୍ତିଭୂମିର ବିକାଶ କରିବା ନିହାତି ଦରକାର। କିନ୍ତୁ ନବ ଉଦାରବାଦୀ ନୀତି ଗ୍ରହଣ କରି ଆସିଥିବା ସରକାରମାନେ କୃଷିରେ ବ୍ୟୟ ବରାଦ ବଢାଇବା ଦେଖାଯାଉନି। ବିଶେଷ କରି ମୋଦି ସରକାରଙ୍କ ଗତ ଛଅ ବର୍ଷର ଶାସନ କାଳରେ କୃଷିରେ ସରକାରୀ ପୁଞ୍ଜିନିବେଶର ହାର ଲଗାତାର କମିବାରେ ଲାଗିଛି। ଖୋଦ୍ ରିଜର୍ଭ ବ୍ୟାଙ୍କ୍‌ର ରିପୋର୍ଟ ଅନୁସାରେ ୨୦୧୨-୧୩ ରୁ ୨୦୧୭-୧୮ ମଧ୍ୟରେ ଭାରତରେ କୃଷି କ୍ଷେତ୍ରରେ ପ୍ରତିବର୍ଷ ସରକାରୀ ପୁଞ୍ଜିନିବେଶର ପରିମାଣ ହ୍ରାସ ପାଇ ଜିଡ଼ିପିର ମାତ୍ର ୦.୪% ରେ ସୀମିତ ରହିଛି। ପରିତାପର କଥା, କୃଷି କ୍ଷେତ୍ରକୁ ସଙ୍କଟରୁ ଉଦ୍ଧାର କରିବାକୁ ସରକାର ନିଜର ପୁଞ୍ଜିନିବେଶ କରିବା ପରିବର୍ତ୍ତେ ତାକୁ ଘରୋଇ ପୁଞ୍ଜିର ଦୟାରେ ଛାଡ଼ିଦେବାକୁ ଚାହୁଁଛନ୍ତି।

ମୋଦି ସରକାର ଆସନ୍ତା ୨୦୨୨ ସୁଦ୍ଧା ଚାଷୀଙ୍କ ଆୟକୁ ଦୁଇଗୁଣ କରିବାକୁ ଲକ୍ଷ୍ୟ ରଖିଥିବା କଥା କହି ଆସିଛନ୍ତି। କିନ୍ତୁ ଏଠାରେ ପ୍ରଶ୍ନ ଉଠେ ଯେ ସରକାର ଚାଷୀଙ୍କ କେଉଁ ଆୟକୁ ଦୁଇଗୁଣ କରିବାକୁ ଚାହୁଁଛନ୍ତି। କାରଣ ସରକାରଙ୍କ ସର୍ଭେ ଅନୁଯାୟୀ ୨୦୧୬ରେ ଦେଶର ଚାଷୀ ପରିବାରର ହାରାହାରି ଆୟ ଟ.୩,୧୪୦ ହୋଇଥିବା ବେଳେ ବର୍ତ୍ତମାନ ଚାଷୀଙ୍କ ବାର୍ଷିକ ଆୟ କେତେ ସେ ସମ୍ପର୍କରେ ସରକାରଙ୍କ ପାଖରେ କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ନାହିଁ। ପୂର୍ବରୁ ସରକାର ପ୍ରତିବର୍ଷ ଦେଶରେ ହାରାହାରି କୃଷି ଆୟକୁ ପ୍ରକାଶ କରୁଥିଲେ। କିନ୍ତୁ ୨୦୧୫-୧୬ ପରେ ବାର୍ଷିକ କୃଷି ଆୟର ତଥ୍ୟ ପ୍ରକାଶ କରିବା ସରକାର ବନ୍ଦ କରି ଦେଲେ। ଫାଇନାନସିଆଲ ଏକ୍ସପ୍ରେସ୍‌ର ୧୬ ଜୁଲାଇ ୨୦୧୯ ରିପୋର୍ଟ ଅନୁଯାୟୀ ରାଜ୍ୟସଭାରେ କୃଷିମନ୍ତ୍ରୀ ଦେଇଥିବା ବୟାନ ଅନୁଯାୟୀ ହରିଆନାରେ କୃଷକଙ୍କ ମାସିକ ଆୟ ଦେଶରେ ସର୍ବାଧିକ ଅର୍ଥାତ୍ ୧୪,୪୩୪ ଟଙ୍କା ଥିବା ବେଳେ ଅନେକ ରାଜ୍ୟମାନଙ୍କରେ ତାହା ପାଂଚ ହଜାରରୁ ମଧ୍ୟ କମ୍ ରହିଛି। ଏଭଳି ପରିସ୍ଥିତିରେ କୃଷକଙ୍କ ଆୟକୁ ଦୁଇ ଗୁଣ କରାଯିବ ବୋଲି ମୋଦି ସରକାରଙ୍କ ଘୋଷଣାର କିଛି ମାନେ ନାହିଁ। କାରଣ କୌଣସି କୃଷକ ପରିବାରର ଆୟ ଯଦି ଆସନ୍ତା ୨୦୨୨ ସୁଦ୍ଧା ଦ୍ୱିଗୁଣିତ ହୋଇ ମାସିକ ୧୦ ହଜାର ଟଙ୍କା

ହେବ, ତାହେଲେ ବି ତାର ସ୍ଥିତିରେ କୌଣସି ଆଖିଦୃଶିଆ ପରିବର୍ତ୍ତନ ହେବାର ନାହିଁ। କିନ୍ତୁ ସରକାରଙ୍କ ଏହି ଘୋଷଣା ବି ଯେ କାର୍ଯ୍ୟକାରୀ କରିବା ଏତେ ସହଜ ନୁହେଁ, ତାହା ଖୋଦ ସରକାରଙ୍କ ନୀତିକୁ ସମର୍ଥନ କରୁଥିବା ଲୋକେ ସ୍ୱୀକାର କରୁଛନ୍ତି। କୃଷି ଆଇନର ବଡ଼ ସମର୍ଥକ କୁହାଯାଉଥିବା ଅର୍ଥନୀତିଜ୍ଞ ଅଶୋକ ଗୁଲାଟୀଙ୍କ ମତ ଅନୁଯାୟୀ ଦେଶରେ ଚାଷୀଙ୍କ ବର୍ତ୍ତମାନର ଆୟ ଦୁଇ ଗୁଣା ହେବାକୁ ହେଲେ କୃଷିର ବିକାଶ ଦର ଅନେକ ବର୍ଷ ପର୍ଯ୍ୟନ୍ତ ୧୦% ରହିବା ଜରୁରୀ।

## କୃଷି ବଜାର ଦଖଲ ପାଇଁ କର୍ପୋରେଟ୍‌ଙ୍କ ପ୍ରସ୍ତୁତି

ଦେଶରେ କୃଷି କ୍ଷେତ୍ରର କର୍ପୋରେଟକରଣର ଯୋଜନାଟି ଆଦୌ ଆକସ୍ମିକ ନୁହେଁ। ମୋଦି ସରକାର ଦେଶର କୃଷି କ୍ଷେତ୍ରରେ କର୍ପୋରେଟ୍ ପୁଞ୍ଜିର ଅବାଧ ପ୍ରବେଶ ପାଇଁ ତିନୋଟି କୃଷି ଆଇନକୁ ଆଣିବାକୁ ଅନେକ ଦିନ ଧରି ବିଚାର କରୁଥିଲେ ମଧ୍ୟ ରାଜନୈତିକ ପରିସ୍ଥିତି ଅନୁକୂଳ ନଥିବାରୁ ସେ ଦିଗରେ ଆଗକୁ ବଢ଼ିପାରୁ ନଥିଲେ। ତେବେ ମହାମାରୀ ଓ ତଜ୍ଜନିତ ଲକ୍‌ଡ଼ାଉନ୍ ଫଳରେ ସୃଷ୍ଟି ହୋଇଥିବା ସୁଯୋଗରେ ସରକାର ଏଭଳି କୃଷକ ବିରୋଧି ଆଇନଗୁଡ଼ିକୁ ଆଣିବାକୁ ସାହାସ କରିଛନ୍ତି। କୃଷି କ୍ଷେତ୍ରରେ ପୁଞ୍ଜିନିବେଶ ପାଇଁ ଲାଳାୟିତ ଦେଶୀ ବିଦେଶୀ କର୍ପୋରେଟ୍‌ମାନଙ୍କ ଏଥିପାଇଁ ପୂର୍ବ ପ୍ରସ୍ତୁତିକୁ ଦେଖିଲେ ଏହି କଥାକୁ ସହଜରେ ବୁଝିହେବ। କୃଷିକ୍ଷେତ୍ରରେ କର୍ପୋରେଟ୍‌ମାନଙ୍କ ପାଇଁ ରାସ୍ତା ଖୋଲିବା ପାଇଁ ଗତ କିଛି ବର୍ଷ ଧରି ସରକାର ଲଗାତାର ଉଦ୍ୟମ କରି ଆସିଛନ୍ତି। କୃଷି ଉତ୍ପାଦର ସଂଗ୍ରହ ତଥା କୃଷି ଭିତ୍ତିଭୂମିରେ ସରକାରୀ ବ୍ୟୟବରାଦକୁ ହ୍ରାସ କରିବା ସହ ଘରୋଇ କମ୍ପାନୀଙ୍କ ଭାଗିଦାରୀକୁ ବୃଦ୍ଧି କରିବା ଏହି ଉଦ୍ୟମର ହିଁ ଅଂଶ ବିଶେଷ ବୋଲି କୁହାଯାଇପାରେ। ସରକାରଙ୍କ ଏଫ୍‌ସିଆଇ ଗତ କିଛି ମର୍ଷ ମଧ୍ୟରେ ଦେଶର ବିଭିନ୍ନ ରାଜ୍ୟରେ କୃଷି ଉତ୍ପାଦ ସଂଗ୍ରହକୁ ବନ୍ଦ କରିଥିବା ବେଳେ ନିଜର ସଂଗୃହୀତ ଖାଦ୍ୟଶସ୍ୟକୁ ରଖିବା ପାଇଁ ଆଉ ନୂତନ ଗୋଦାମ ନିର୍ମାଣ କରୁନାହିଁ। ଇତି ମଧ୍ୟରେ ଆଦାନୀ ଏଗ୍ରୋ ଲଜିଷ୍ଟିକ୍ ଲିମିଟେଡ୍ ଏଫ୍‌ସିଆଇ ସହିତ ଏକ ବୁଝାମଣା କରି ଭଡ଼ା ସୂତ୍ରରେ ନିଜର ଗୋଦାମଗୁଡ଼ିକରେ ଖାଦ୍ୟଶସ୍ୟ ରଖିବାକୁ

ସ୍ଥିର କରିଛି । ସରକାର ଗୋଦାମ ପାଇଁ ଭଡ଼ା ବାବଦରେ ୨୦୧୫-୧୬ରେ ୨୧୨୭ କୋଟି ଟଙ୍କା ବ୍ୟୟ କରିଥିବା ବେଳେ ୨୦୧୮-୧୯ରେ ୩୧୦୮ କୋଟି ଟଙ୍କା ଦେଇଛନ୍ତି । ସରକାର ଚାହିଁଲେ ଏତେ ଅର୍ଥ ଭଡ଼ା ବାବଦରେ ଖର୍ଚ୍ଚ କରିବା ବଦଳରେ ନୂଆଁ ଗୋଦାମ ବି ନିର୍ମାଣ କରି ପାରିଥାନ୍ତେ, କାହିଁକି ତିଆରି କରୁନାହାନ୍ତି ।

ଦେଶରେ କୃଷି କ୍ଷେତ୍ରରେ ଘରୋଇ ପୁଞ୍ଜିନିବେଶର ସମ୍ଭାବନାକୁ ଦେଖି ଗତ କିଛି ବର୍ଷ ଧରି ଅନେକ ଦେଶୀ ବିଦେଶୀ ବୃହତ୍ତ କମ୍ପାନୀ ସେମାନଙ୍କ ଉଦ୍ୟମକୁ ତ୍ୱରାନ୍ୱିତ କରିଛନ୍ତି । ଏ କ୍ଷେତ୍ରରେ ସବୁଠାରୁ ବଡ଼ ଉଦ୍ୟମଟି କରିଛନ୍ତି ମୋଦି ସରକାରର ଘନିଷ୍ଠ ଶିଳ୍ପପତି ଭାବେ ପରିଚିତ ଆମ୍ବାନୀ ଓ ଆଦାନୀ । ଆଦାନୀ କୃଷି ଉତ୍ପାଦର ସଂଗ୍ରହ ଏବଂ ଜମା କ୍ଷେତ୍ରରେ ନିଜର ପୁଞ୍ଜିନିବେଶକୁ କେନ୍ଦ୍ରିତ କରିଥିବା ବେଳେ ଆମ୍ବାନୀ ଠିକାଚାଷ ଜରିଆରେ କୃଷିଜାତ ଦ୍ରବ୍ୟର ଉତ୍ପାଦନ, ପ୍ରକ୍ରୀୟାକରଣ ଏବଂ ଖୁଚୁରା ବଜାରରେ ନିଜର ପୁଞ୍ଜିନିବେଶକୁ ବୃଦ୍ଧି କରିବାରେ ଲାଗିଛି । ଦେଶର ଖୁଚୁରା ବ୍ୟବସାୟରେ ରିଲାଏନ୍‌ସ ନିଜର ପୁଞ୍ଜିନିବେଶକୁ ବୃଦ୍ଧି କରି ଇତି ମଧ୍ୟରେ ଏକ ବଡ଼ ଖେଳାଳୀରେ ପରିଣତ ହୋଇଥିବା ବେଳେ ଆଦାନୀ ଗତ କିଛି ବର୍ଷ ମଧ୍ୟରେ ଏ କ୍ଷେତ୍ରରେ ନିଜର ବିପୁଳ ପୁଞ୍ଜିନିବେଶ କରି ଦେଶର ବିଭିନ୍ନ ରାଜ୍ୟରେ ଶହ ଶହ ଗୋଦାମ ଏବଂ ଶୀତଳ ଭଣ୍ଡାର ନିର୍ମାଣ କରି ଚାଲିଛି । ଭାରତୀୟ ରେଳବାଇ ସହିତ ପିପିପି ମାଧ୍ୟମରେ ସେ ରେଳବାଇର ବିପୁଳ ଜମିରେ ନିଜର ବଡ଼ ବଡ଼ ଭୂତଳ ଗୋଦାମ ସବୁ ନିର୍ମାଣ କରିଛି ।

ଆଜି ଆଦାନୀ ପାଖରେ ବିପୁଳ କୃଷି ଉତ୍ପାଦକୁ ସଂଗ୍ରହ କରି ରଖିବାକୁ ଶହ ଶହ ଭୂମିଗତ ଗୋଦାମ ସହିତ ମାଲ ପରିବହନ ପାଇଁ ନିଜସ୍ୱ ମାଲଗାଡ଼ି ରହିଛି । ସରକାରଙ୍କ ଘରୋଇକରଣ ନୀତିର ଫାଇଦା ନେଇ ଆଦାନୀ ଅନେକ ଗୁଡ଼ିଏ ସରକାରୀ ବନ୍ଦର, ବିମାନ ବନ୍ଦର ଏବଂ ବନ୍ଦର ପାଖ ପଣ୍ୟାଗାରର ମାଲିକାନା ହସଲ କରିବା ପରେ ଏବେ ନୂଆ କୃଷି ଆଇନ ପରେ ଏ କ୍ଷେତ୍ରରେ ବଡ଼ ଧରଣର ପୁଞ୍ଜିନିବେଶ କରିବାକୁ ଯାଉଛି । ଆଦାନି ପାଖରେ ବର୍ତ୍ତମାନ ପଞ୍ଜାବ, ହରିଆନା, ମହାରାଷ୍ଟ୍ର, ପଶ୍ଚିମ ବଙ୍ଗ, ତାମିଲନାଡୁ, କର୍ଣ୍ଣାଟକ୍‌ରେ ପ୍ରାୟ ୫.୭୫ ଲକ୍ଷ ମେଟ୍ରିକ

ଟନ୍‌ର ଗୋଦାମ ନିର୍ମାଣ ହୋଇ ରହିଥିବା ବେଳେ ମଧ୍ୟପ୍ରଦେଶରେ ୩ ଲକ୍ଷ ମେଟ୍ରିକ୍ ଟନ୍‌ର ନିର୍ମାଣ ପାଇଁ ସରକାରଙ୍କ ସହିତ ବୁଝାମଣା ହୋଇଛି । ପଞ୍ଜାବର ମୋଗା ଓ ହରିଆନାର କେଥୋଲରେ ୨ ଲକ୍ଷ ମେଟ୍ରିକ୍ ଟନ୍‌ର ଦୁଇଟି ମୁଖ୍ୟ ଗୋଦାମ (ବେସ୍ ଡ଼ିପୋ) ନିର୍ମାଣ କରିଥିବା ବେଳେ ଚେନ୍ନାଇ, କୋଇମ୍ବାଟୁର, ହୁଗଳି, ବେଙ୍ଗାଲୁରୁ, ନବୀ ମୁମ୍ବାଇରେ ୫୦ ହଜାର ମେଟ୍ରିକ୍ ଟନ୍‌ର ଗୋଦାମର ନିର୍ମାଣ ଚାଲିଛି । ସେହିପରି କଟିହାର, ପାନିପତ, କନୌଜ, ମୋଗା, ରାମନ, ମାନସା, ଭଟିଣ୍ଡା, ନକଟୋଡ଼ା, ବର୍ଣ୍ଣାଲାରେ ୨୦୨୦ ସୁଦ୍ଧା ଗୋଦାମ ନିର୍ମାଣ ଶେଷ ହେବାକୁ ବସିଥିବା ବେଳେ ଦାହୋଡ଼, ବୋରିଭେଲି, ଦରଭଙ୍ଗା, ହୋସଙ୍ଗାବାଦ, ହରଦା, ସତନା, ଉଜ୍ଜୟନୀ ,ବିଦିସା, ଦେବାସ ଆଦି ସ୍ଥାନରେ ୫୦ ହଜାର ମେଟ୍ରିକ ଟନ୍ ବିଶିଷ୍ଟ ଗୋଦାମ ସବୁର ନିର୍ମାଣ କାମ ଆରମ୍ଭ ହେବାକୁ ଯାଉଛି । ଆଦାନୀ ଆନୁଷ୍ଠାନିକ ଭାବେ ଆସନ୍ତା ୨୦୨୦ ସୁଦ୍ଧା ୧୦.୨୫ ଲକ୍ଷ ମେଟ୍ରିକ୍ ଟନ୍, ୨୦୨୧ – ୨୦୨୧ ସୁଦ୍ଧା ୧୪.୨୫ ଲକ୍ଷ ମେଟ୍ରିକ୍ ଟନ୍, ୨୦୨୧-୨୨ ସୁଦ୍ଧା ୨୦.୭୫ ଲକ୍ଷ ମେଟ୍ରିକ ଟନ୍, ୨୦୨୨-୨୩ ସୁଦ୍ଧା ୨୫.୭୫ ଲକ୍ଷ ମେଟ୍ରିକ୍ ଟନ୍ ଏବଂ ୨୦୨୩-୨୪ ସୁଦ୍ଧା ୩୦ ଲକ୍ଷ ମେଟ୍ରିକ୍ ଟନ୍ କ୍ଷମତା ସମ୍ପନ୍ନ ଗୋଦାମ ତିଆରି କରିବାକୁ ଲକ୍ଷ୍ୟ ରଖିଛି । ଦେଶର କୃଷି କ୍ଷେତ୍ରରେ ନିଜର ବିପୁଳ ପୁଞ୍ଜିନିବେଶ କରି ମୁନାଫା କମାଇବାର ଲକ୍ଷ୍ୟ ନେଇ ଆଦାନୀ, ଆମ୍ବାନୀ, ୱାଲମାର୍ଟ ପରି ଦେଶୀ ବିଦେଶୀ ବୃହତ୍ତ କମ୍ପାନୀମାନେ ବହୁଦିନ ଧରି ନିଜର ପ୍ରସ୍ତୁତି ଆରମ୍ଭ କରିଥିବା ବେଳେ ଆଜି ସେମାନଙ୍କ ଯୋଜନାକୁ ସଫଳ କରିବାକୁ ମୋଦି ସରକାର ନୂଆ କୃଷି ଆଇନ ଆଣିଛନ୍ତି ।

## କର୍ପୋରେଟକରଣ କୃଷି ସଙ୍କଟର ସମାଧାନ ନୁହେଁ

ମୋଦି ସରକାରଙ୍କ ନବଉଦାର ନୀତିର ପରିଣାମ ସ୍ୱରୂପ ଦେଶରେ କୃଷି ସଙ୍କଟ ଉତ୍କଟ ହେବା ସହିତ କୃଷକ ଆତ୍ମହତ୍ୟା ଓ କୃଷିରୁ ପଳାୟନ ଲଗାତାର ବଢ଼ିବାରେ ଲାଗିଛି । କୃଷି ସଙ୍କଟର ସମାଧାନ ପାଇଁ ତଥା ନିଜର ପ୍ରତିଶ୍ରୁତି ମୁତାବକ କୃଷକଙ୍କ ଆୟକୁ ଦ୍ୱିଗୁଣିତ କରିବାକୁ ଠୋସ୍ ପଦକ୍ଷେପ ନେବା ପରିବର୍ତ୍ତେ ସରକାର କୃଷିକୁ ବୃହତ୍ତ କର୍ପୋରେଟ୍‌ଙ୍କ ହାତରେ ଟେକିଦେଲେ ସଙ୍କଟର ସମାଧାନ

ହୋଇଯିବ ବୋଲି ଭାବୁଛନ୍ତି । ସରକାରଙ୍କ ଯୁକ୍ତି ହେଉଛି ଯେ ଉପରୋକ୍ତ ତିନୋଟି ଆଇନ ଫଳରେ ଦେଶରେ ଏକକ କୃଷି ବଜାର ପ୍ରତିଷ୍ଠା ହେବ, ଚାଷୀମାନେ ନିଜର ଉତ୍ପାଦର ଭଲ ଦାମ୍ ପାଇବେ ଏବଂ କୃଷି ଉତ୍ପାଦନରେ ବୃଦ୍ଧି ଘଟିବ । କିନ୍ତୁ ଏଭଳି ଯୁକ୍ତି ସମ୍ପୂର୍ଣ୍ଣ ରୂପେ ଭିତ୍ତିହୀନ ମନେହୁଏ । କାରଣ ଆମେରିକା ଓ ୟୁରୋପର ଯେଉଁ ଦେଶମାନେ ଅତିତରେ ଏହି ନୀତି ଗ୍ରହଣ କରିଛନ୍ତି ସେମାନଙ୍କ ଅଭିଜ୍ଞତାଟି ଆମ୍ଭ ପାଇଁ ଆଦୌ ଅନୁକରଣୀୟ ନୁହେଁ । ସେପରି ନୀତି ଫଳରେ ସେଠାକାର ଛୋଟ ଓ ମଧ୍ୟମ ଚାଷୀମାନେ କୃଷିରୁ ହିଁ ସମ୍ପୂର୍ଣ୍ଣ ରୂପେ ବିସ୍ଥାପିତ ହୋଇ ସାରିଥିବା ବେଳେ ବର୍ତ୍ତମାନ ସେଠାକାର ଜନସଂଖ୍ୟାର ମାତ୍ର ୨% କମ୍ ହିଁ କୃଷି ସହିତ ଜଡ଼ିତ ଅଛନ୍ତି । ଗତ ଛଅ ସାତ ଦଶକ ଧରି ସେଠାରେ କୃଷିକ୍ଷେତ୍ରକୁ ସମ୍ପୂର୍ଣ୍ଣ ରୂପେ ଖୋଲା କରିଦେବା ସତ୍ତ୍ୱେ ସେଠାକାର କୃଷି ଭୟଙ୍କର ସଙ୍କଟ ଦେଇ ଗତି କରୁଛି । କୃଷକଙ୍କ ଆୟ ୫୦% ହ୍ରାସ ପାଇଥିବା ବେଳେ କୃଷକ ଆତ୍ମହତ୍ୟା ଦୁଇ ଗୁଣ ହୋଇଛି । ବିକଶିତ ଦେଶମାନେ ବିଶ୍ୱ ବାଣିଜ୍ୟ ସଙ୍ଗଠନ ଜରିଆରେ ଭାରତ ପରି ବିକାଶଶୀଳ ଦେଶମାନଙ୍କୁ ସେମାନଙ୍କ କୃଷି ସବ୍‌ସିଡ଼ିକୁ ସମାପ୍ତ କରିବାକୁ ଚାପ ପକାଉଥିବା ବେଳେ ନିଜ ଦେଶରେ କିନ୍ତୁ ବିପୁଳ କୃଷି ସବ୍‌ସିଡ଼ି ଅବ୍ୟାହତ ରଖିଛନ୍ତି । ଆମେରିକା ତାର କୃଷିକ୍ଷେତ୍ରକୁ ବାର୍ଷିକ ୨୦ ବିଲିଅନ୍ ଡ଼ଲାର ସବ୍‌ସିଡ଼ି ଦେଉଥିବା ବେଳେ ଜାପାନ ତାର ମୋଟ କୃଷି ଖର୍ଚ୍ଚର ୪୦% ସବ୍‌ସିଡ଼ି ଆକାରରେ ପ୍ରଦାନ କରୁଛି । ସେଠାକାର ସରକାରମାନେ ଯଦି କୃଷି ପାଇଁ ଦେଉଥିବା ଏସବୁ ବିପୁଳ ସବ୍‌ସିଡ଼ିକୁ ବନ୍ଦ କରି ଦିଅନ୍ତି ତାହେଲେ ସେଠାକାର କୃଷି ଯେ ସମ୍ପୂର୍ଣ୍ଣ ଭାବେ ଧ୍ୱଂସ ପାଇଯିବ ସେଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଆମେରିକାର ଜଣେ ଚାଷୀ ନିକଟରେ ଟ୍ୱିଟ୍ କରି କହିଛନ୍ତି ଯେ ୨୦୧୮ ମସିହାରେ ଯେତିକି ମୂଲ୍ୟରେ ସେ ନିଜର ମକା ଫସଲକୁ ବିକ୍ରୀ କଲେ ତା'ଠାରୁ ଅଧିକ ମୂଲ୍ୟ ୧୯୭୨ ମସିହାରେ ତାଙ୍କର ବାପା ନିଜର କପା ବିକ୍ରୀ କରି ପାଇଥିଲେ । ଅତ୍ୟନ୍ତ ମାମୁଲି ମନେ ହେଉଥିବା ଏହି ଟ୍ୱିଟ୍‌ଟି ସେଠାକାର କୃଷିର ଦୁର୍ଦ୍ଦଶାକୁ ଉଜାଗର କରିବାକୁ ଯଥେଷ୍ଟ ମନେହୁଏ । ଆମେରିକା ସରକାରଙ୍କ ଗତ କିଛି ବର୍ଷର ବିଭିନ୍ନ ତଥ୍ୟ ଓ ଅଧ୍ୟୟନରୁ ଗୋଟିଏ କଥା ସ୍ପଷ୍ଟ ଯେ ସେଠାକାର କୃଷି ଆମ ଦେଶ ଭଳି ସଙ୍କଟ ଦେଇ ଗତି କରୁଛି । ନିକଟରେ ଆମେରିକାର କୃଷି

ବିଭାଗର ମୁଖ୍ୟ ଅର୍ଥନୀତିଜ୍ଞ ସ୍ୱୀକାର କରିଛନ୍ତି ଯେ ସେଠାକାର କୃଷକମାନଙ୍କ ଆୟ ଲଗାତାର ହ୍ରାସ ପାଇବାରେ ଲାଗିଛି। ଚଳିତ ବର୍ଷ ଆମେରିକାର କୃଷକମାନଙ୍କ ଉପରେ ଋଣଭାର ୪୨୫ ବିଲିଅନ୍ ଡ଼ଲାରରେ ଯାଇ ପହଂଚିଛି। କୃଷି ସଙ୍କଟ କାରଣରୁ ବି ସେଠାକାର ଗ୍ରାମାଞ୍ଚଳର ଆତ୍ମହତ୍ୟାର ହାର ସହରାଂଚଳ ତୁଳନାରେ ୪୫% ଅଧିକ ରହିଥିବା ଜଣାପଡ଼ିଛି। ଏଥିରୁ ଗୋଟିଏ କଥା ପ୍ରମାଣିତ ଯେ ଛଅ ସାତ ଦଶକ ତଳେ ଆମେରିକା କୃଷିର ବିକାଶ ନାଁରେ ଯେଉଁ କର୍ପୋରେଟୀକରଣ କରିଥିଲା, ତାହା ଏକଦମ୍ ବିଫଳ ହୋଇଛି।

ତେବେ କେବଳ ଆମେରିକା ନୁହେଁ, ୟୁରୋପରେ ବି ମୁକ୍ତ ବଜାର ନୀତି ଲାଗୁ ହେବାପରେ କୃଷିର ସେହି ଏକା ଅବସ୍ଥା ଦେଖିବାକୁ ମିଳିଛି। ଫ୍ରାନ୍ସରେ ବାର୍ଷିକ ହାରାହାରି ୫୦୦ କୃଷକ ଆତ୍ମହତ୍ୟା କରୁଛନ୍ତି। ଆମେରିକାରେ ୧୯୭୦ରୁ ଆଜି ମଧ୍ୟରେ ୯୩% ଡ଼େଇରୀ ଫାର୍ମ ବନ୍ଦ ହୋଇଯାଇଥିବା ବେଳେ ଇଂଲଣ୍ଡରେ ଗତ ତିନି ବର୍ଷ ମଧ୍ୟରେ ୩୦୦୦ରୁ ଅଧିକ ଡ଼େୟିରୀ ଫାର୍ମ ବନ୍ଦ ହୋଇଯାଇଛି। ଆମେରିକା ଏବଂ ଅନ୍ୟ ପାଶ୍ଚାତ୍ୟ ଦେଶମାନଙ୍କରେ କେବଳ କୃଷି ନୁହେଁ ବରଂ କୃଷିଜାତ ଦ୍ରବ୍ୟର ରପ୍ତାନୀ ବି ବ୍ୟାପକ ସବସିଡ଼ି ଯୋଗୁଁ ଚାଲିଛି। ଓ.ଇ.ସି.ଡ଼ିର ୨୦୧୮ର ରିପୋର୍ଟ ଅନୁଯାୟୀ ବିଶ୍ୱର ଧନୀଦେଶମାନେ ପ୍ରତିବର୍ଷ ସେମାନଙ୍କ କୃଷିକ୍ଷେତ୍ରକୁ ୨୪୬ ଲକ୍ଷ କୋଟି ସବସିଡ଼ି ପ୍ରଦାନ କରୁଛନ୍ତି। ଆମେରିକାରେ ଜଣେ ଚାଷୀକୁ ବାର୍ଷିକ ହାରାହାରି ୭ ହଜାର ଡ଼ଲାର ସବସିଡ଼ି ମିଳୁଥିବା ବେଳେ ଆମ ଦେଶରେ ତାହା ମାତ୍ର ୨୦୦ ଡ଼ଲାରରେ ସୀମିତ ରହିଛି। ୟୁରୋପୀୟ ୟୁନିଅନ୍ ଓ ଜାପାନ ସେଠାକାର ଗାଇ ପିଛା ଦୈନିକ ଯଥାକ୍ରମେ ୨.୭ ଡ଼ଲାର ଏବଂ ୮ ଡ଼ଲାର ଖର୍ଚ୍ଚ କରୁଥିବା ବେଳେ ଆମ ଦେଶର ୭୭% ଜନତା ଦୈନିକ ଅଧା ଡ଼ଲାରରୁ ବି କମ୍ ଖର୍ଚ୍ଚରେ ବଂଚିବାକୁ ବାଧ୍ୟ ହେଉଛନ୍ତି। ଯଦି ସେସବୁ ଦେଶର ସରକାରମାନେ କୃଷି ପାଇଁ ଦେଉଥିବା ନିଜର ବିପୁଳ ସବ୍‌ସିଡ଼ିକୁ ବନ୍ଦ କରିଦେବେ ତାହେଲେ ସେଠାକାର କୃଷି ଏକଦମ୍ ଭୁଷୁଡ଼ି ପଡ଼ିବା ନିଶ୍ଚିତ।

## ନବଉଦାର ଅର୍ଥନୀତିର ଅନିବାର୍ଯ୍ୟ ପରିଣାମ

ଏଠାରେ ପ୍ରଶ୍ନ ଉଠେ ଯେ କୃଷି ସଙ୍କଟର ସମାଧାନ ପାଇଁ ଏଯାଏଁ କୌଣସି ଠୋସ୍ ପଦକ୍ଷେପ ନେଇ ନଥିବା ସରକାର ଆଜି କୃଷିର କର୍ପୋରେଟୀକରଣ ପାଇଁ

ଏତେ ବ୍ୟାକୁଳ କାହିଁକି? ଏଠାରେ ଜାଣିବା ଦରକାର କୃଷି କ୍ଷେତ୍ରରେ କର୍ପୋରେଟୀକରଣର କାର୍ଯ୍ୟସୂଚୀଟି ଏବର ନୁହଁ। ଦେଶରେ ନବ ଉଦାର ଅର୍ଥନୀତି ଆରମ୍ଭ ହେବା ପରଠାରୁ ଆମର ଶାସକ ଶ୍ରେଣୀ ଗୋଟିଏ ପରେ ଗୋଟିଏ କ୍ଷେତ୍ରକୁ ପୁଞ୍ଜିର ଅବାଧ ପ୍ରବେଶ ପାଇଁ ଖୋଲି ଆସିଛନ୍ତି। ଏହି କ୍ରମରେ ଦେଶର ସବୁଠାରୁ ବଡ଼ କ୍ଷେତ୍ର ରୂପେ ପରିଚିତ କୃଷିକ୍ଷେତ୍ରରେ ବଡ଼ ପୁଞ୍ଜିର ପ୍ରବେଶ ପାଇଁ ଲଗାତାର ଚେଷ୍ଟା କରି ଆସିଛନ୍ତି। କିନ୍ତୁ କର୍ପୋରେଟ୍ ପୁଞ୍ଜି ପାଇଁ କୃଷିକ୍ଷେତ୍ରରେ କୌଣସି ମୌଳିକ ପରିବର୍ତ୍ତନ କଲେ ଯେ ଭୟଙ୍କର ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିବ, ସେକଥା ଶାସକ ଶ୍ରେଣୀ ଭଲ ରୂପେ ଜାଣିଛନ୍ତି। ତେଣୁ ଉପା ସରକାରର ଦ୍ୱିତୀୟ ପାଳିରେ ମଧ୍ୟ ଏପରି ଏକ ଚେଷ୍ଟା ହୋଇଥିଲେ ମଧ୍ୟ ତାକୁ କାର୍ଯ୍ୟକାରୀ କରିବାକୁ ସେମାନେ ସାହସ କରି ନଥିଲେ। ମୋଦି ସରକାର ମଧ୍ୟ ଏହାକୁ କାର୍ଯ୍ୟକାରୀ କରିବାକୁ ଦୀର୍ଘ ଛଅ ବର୍ଷ ଅପେକ୍ଷା କରିବାକୁ ପଡ଼ିଲା। ଅସଲ କଥା ହେଲା, ପୁଞ୍ଜିବାଦୀ ବଜାର ସଙ୍କଟରେ ଉବୁଟୁବୁ ହେଉଥିବା ବୃହତ୍ତ ପୁଞ୍ଜି, ତାର ଲୁଟ୍‌କୁ ଅବ୍ୟାହତ ରଖିବାକୁ ନୂଆଁ ନୂଆଁ କ୍ଷେତ୍ରର ସନ୍ଧାନରେ ରହିଛି। ଏହିକ୍ରମରେ କୃଷି ପରି ଭାରତର ଏକ ବିଶାଳ କ୍ଷେତ୍ରରେ ପ୍ରବେଶ ପାଇଁ ବହୁ ଦିନ ଧରି ବ୍ୟାକୁଳ ହୋଇ ରହିଛି। ମୋଦି ନେତୃତ୍ୱାଧୀନ ବିଜେପି-ଆର୍‌ଏସ୍‌ଏସ୍‌ର ସରକାର ବଡ଼ ପୁଞ୍ଜିର ସବୁଠାରୁ ବିଶ୍ୱସ୍ତ ଦଲାଲ ଭାବେ ମୁନିବଙ୍କ ସୁପର ମୁନାଫା ପାଇଁ ଆଗେଇ ଆସିଛନ୍ତି ଏବଂ କରୋନାର ସୁଯୋଗରେ ବୃହତ୍ତ ପୁଞ୍ଜି ପାଇଁ ଦେଶର କୃଷିକ୍ଷେତ୍ରକୁ ଏକଦମ୍ ଖୋଲି ଦେଇଛନ୍ତି।

ଏତଦ୍ ବ୍ୟତିତ କୃଷି ସଙ୍କଟର ସମାଧାନ କରିବାରେ ବିଫଳ କେନ୍ଦ୍ର ସରକାର ଓ ତାଙ୍କ ସହିତ ଜଡ଼ିତ ଅର୍ଥନୀତିଜ୍ଞମାନଙ୍କ ଏକ ଧାରଣା ରହିଛି ଯେ ମୁକ୍ତ ବଜାର ଜରିଆରେ ହିଁ କୃଷି ସଙ୍କଟକୁ ସମାଧାନ କରାଯାଇ ପାରିବ। ଏହି ଚିନ୍ତା ନେଇ ହିଁ ସରକାର ତିନୋଟି କୃଷି ଆଇନ ଆଣିଛନ୍ତି। ପୁଞ୍ଜି ଅଭାବର ଶୀକାର ଦେଶର କୃଷି କ୍ଷେତ୍ରକୁ ବଡ଼ କର୍ପୋରେଟଙ୍କ ପୁଞ୍ଜି ଆସିଲେ, କୃଷି ଉତ୍ପାଦନ ବୃଦ୍ଧି ପାଇବା ସହ ସେମାନେ କୃଷି ଭିତ୍ତିଭୂମିର ବିକାଶ ଘଟିବ, କୃଷିଜାତ ଦ୍ରବ୍ୟର ପ୍ରକ୍ରୀୟାକରଣ ଶିଳ୍ପ ଗଢ଼ି ଉଠିବ ଯାହାରି ଫଳରେ ଦେଶର ଜିଡ଼ିପିରେ କୃଷିର ଭାଗ ବୃଦ୍ଧି ପାଇବ। ଏହି ଯୁକ୍ତିରେ ତ କିଛି ସତ୍ୟତା ରହିଛି। କିନ୍ତୁ କର୍ପୋରେଟ୍ ଆସିବା

ପରେ ଦେଶର କୃଷି ଉପରେ ନିର୍ଭରଶୀଳ ପ୍ରାୟ ସତୁରୀ ଭାଗ ଲୋକ ଯିବେ କୁଆଡ଼େ, ସେ ନେଇ ସେମାନଙ୍କ ପାଖରେ କୌଣସି ଉତ୍ତର ନାହିଁ।

କୃଷିକ୍ଷେତ୍ରରେ ମୁକ୍ତ ବଜାର ନୀତିଟି ଆଦୌ ନୂଆ ନୁହେଁ। ଆମ ଠାରୁ ଢ଼େର ଆଗରୁ ଗତ ଛଅ ସାତ ଦଶକ ଧରି ଆମେରିକା ଓ ୟୁରୋପର ଦେଶମାନେ ଏହି ନୀତିକୁ ଅବଲମ୍ବନ କରି ସେମାନଙ୍କ କୃଷିକୁ ଅଧିକ ସଙ୍କଟଗ୍ରସ୍ତ କରିଛନ୍ତି। ସେଠାରେ କମ୍ପାନୀମାନଙ୍କ ପାଇଁ କୃଷିଜାତ ପଦାର୍ଥର କ୍ରୟବିକ୍ରୟ, ଭଣ୍ଡାରଣ ଏବଂ ମୂଲ୍ୟ ନିର୍ଦ୍ଧାରଣ ଆଦି ସମସ୍ତ କ୍ଷେତ୍ରରେ କୌଣସି ସରକାରୀ ନିୟନ୍ତ୍ରଣ କିମ୍ବା ସୀମା ନାହିଁ। ସେଠାକାର କୃଷକ କେବଳ ନିଜ ଦେଶରେ ନୁହେଁ ବରଂ ବିଶ୍ୱର ଯେକୌଣସି ସ୍ଥାନକୁ ନିଜର ଉତ୍ପାଦକୁ ରପ୍ତାନୀ କରିପାରିବାର ସୁଯୋଗ ରହିଛି। କିନ୍ତୁ ଏତେସବୁ ନୀତିଗତ ଉଦାରତା ଏବଂ ବିପୁଳ ସବ୍‌ସିଡ଼ି ସତ୍ତ୍ୱେ ସେଠାକାର କୃଷି ଏବଂ କୃଷକ ଉଭୟ ଭୟଙ୍କର ସଙ୍କଟରେ ରହିଛନ୍ତି। ପ୍ରଶ୍ନ ଉଠେ, ଯେଉଁ ନୀତିକୁ ଗ୍ରହଣ କରିବାର ପରିଣାମ ସ୍ୱରୂପ ପାଶ୍ଚାତ୍ୟ ଦେଶମାନଙ୍କ କୃଷି ଭୟଙ୍କର ସଙ୍କଟଗ୍ରସ୍ତ ହୋଇଛି, ଆମର ସରକାର ତାକୁ ଭାରତର କୃଷି ସଙ୍କଟର ରାମବାଣ ବୋଲି ଭାବୁଛନ୍ତି କିପରି ? ଆମର ଶାସକ ଶ୍ରେଣୀ ଏବଂ ସେମାନଙ୍କ ବୋଲକରା ଅର୍ଥନୀତିଜ୍ଞମାନେ ନବ ଉଦାର କୃଷିର ଏହି ବିଫଳ ମୋଡ଼େଲକୁ ଆମ ଆଗରେ ତିନି ତୁଣ୍ଡରେ କୁକୁରକୁ ଛେଳି ରୂପେ ଉପସ୍ଥାପିତ କରୁଛନ୍ତି। ସତ କଥା ହେଲା, ବିଶ୍ୱରେ ଖାଦ୍ୟଶସ୍ୟ ଓ ଅନ୍ୟ କୃଷିଜାତ ସାମଗ୍ରୀର ବ୍ୟବସାୟ ଓ ତାର ପ୍ରକ୍ରୀୟାକରଣ ଶିଳ୍ପରେ ନିୟୋଜିତ ବିଶ୍ୱ ବଡ଼ ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ସ୍ୱାର୍ଥରେ ବିଶ୍ୱବ୍ୟାଙ୍କ୍ ଓ ଆର୍ନ୍ତଜାତୀୟ ମୁଦ୍ରାପାଣ୍ଠି ଏଭଳି ନୀତିକୁ ଲାଗୁ କରିବାକୁ ବହୁ ଆଗରୁ ଦେଇଥିବା ପ୍ରେସକ୍ରିପସନ୍‌କୁ ସରକାର ଆଖିବୁଜି ଲାଗୁ କରିବାକୁ ଯାଉଛନ୍ତି।

## କର୍ପୋରେଟକରଣର ଭୟଙ୍କର ପରିଣାମ

ସରକାରଙ୍କ ତିନି କୃଷି ଆଇନ ଦେଶର କୃଷିକ୍ଷେତ୍ରକୁ କର୍ପୋରେଟଙ୍କ ହାତରେ ଟେକି ଦେବାକୁ ଯାଉଛି। କୃଷିରେ କର୍ପୋରେଟକରଣର ନୀତି ଭାରତ ପରି ଏକ କୃଷି ପ୍ରଧାନ ଏବଂ ଜନବହୁଳ ଦେଶ ପାଇଁ କେତେ ବିପଜ୍ଜନକ ତାହା ଚିନ୍ତା କରାଯାଇନପାରେ। ଖୋଦ ସରକାରଙ୍କ କୃଷି ଜନଗଣନାର ତଥ୍ୟ ଅନୁଯାୟୀ

ଭାରତର ମୋଟ ୧୪.୬୫ କୋଟି ଜମି ଥିବା ଚାଷୀଙ୍କ ମଧ୍ୟରୁ ୮୬.୦୮% ହେଉଛନ୍ତି କ୍ଷୁଦ୍ର ଏବଂ ନାମମାତ୍ର ଚାଷୀଯେଉଁମାନଙ୍କ ପାଖରେ ୦-୫ ଏକର ମଧ୍ୟରେ ଜମି ରହିଛି। କୃଷି କାର୍ଯ୍ୟରେ ନିୟୋଜିତ ପରିବାର ମଧ୍ୟରେ ୫୪.୬% ହେଉଛନ୍ତି ଭୂମିହୀନ ଯେଉଁମାନଙ୍କ ନାଁରେ କୌଣସି ଜମି ମାଲିକାନା ନାହିଁ। ଏଭଳି ଅବସ୍ଥାରେ ଯଦି କୃଷିକ୍ଷେତ୍ରକୁ କର୍ପୋରେଟ୍ ପୁଞ୍ଜି ପାଇଁ ଖୋଲି ଦିଆଯିବ ତାହେଲେ ତାର ପରିଣାମଟି ଭୟଙ୍କର ହେବା ନିଶ୍ଚିତ। କର୍ପୋରେଟ୍ କୃଷି ଫଳରେ ଦେଶର କୋଟି କୋଟି କୃଷକ ଏବଂ କୃଷି ଶ୍ରମିକ ଯେତେବେଳେ କୃଷିରୁ ବେଦଖଲ ହେବେ, ସେମାନେ ଯିବେ କୁଆଡ଼େ ? ଖାଦ୍ୟଶସ୍ୟ ଏବଂ କୃଷିଜାତ ଦ୍ରବ୍ୟର ବଜାର ଉପରେ ଯେତେବେଳେ ବଡ଼ କର୍ପୋରେଟ୍‌ମାନଙ୍କ ଏକାଧିକାର ଆସିଯିବ, ସେତେବେଳେ ଦେଶର ଖାଦ୍ୟସୁରକ୍ଷାର ଅବସ୍ଥା କ'ଣ ହେବ ? ବଜାରରେ ଖାଦ୍ୟଶସ୍ୟର ଦରଦାମ୍ ଉପରେ ସରକାରଙ୍କ କୌଣସି ନିୟନ୍ତ୍ରଣ ନରହିଲେ, ତାର ଆକାଶଛୁଆଁ ମୂଲ୍ୟବୃଦ୍ଧିକୁ ଦେଶବାସୀ ସାମନା କରିପାରିବେ କି ? ସରକାର ଯଦି ଦେଶରେ ଖାଦ୍ୟ ସୁରକ୍ଷା ଯୋଜନାରେ ଗରିବ ଲୋକଙ୍କୁ ରିହାତି ଦରରେ ଖାଦ୍ୟଶସ୍ୟ ଯୋଗାଇବା ବନ୍ଦ କରିବେ, ତାହେଲେ ଦେଶର ସଂଖ୍ୟାଧିକ ଲୋକଙ୍କ ଖାଦ୍ୟ ସୁରକ୍ଷା କ'ଣ ହେବ ? ଦେଶରେ ରୋଜଗାର ଦେଉଥିବା ଦ୍ୱିତୀୟ ବଡ଼ କ୍ଷେତ୍ର ରୂପେ ପରିଚିତ ଖୁଚୁରା କ୍ଷେତ୍ରରେ ଯେତେବେଳେ ବଡ଼ କମ୍ପାନୀ ପଶିବେ, ତାହେଲେ ସେଥିରେ କାର୍ଯ୍ୟରତ ୪.୪ କୋଟି ପରିବାର କରିବେ କ'ଣ ?

ଆମେରିକାରେ କୃଷିର ମୁକ୍ତ ବଜାର ଫଳରେ ବର୍ତ୍ତମାନ ଜନସଂଖ୍ୟାର ୨%ରୁ କମ୍ ଲୋକ ହିଁ କୃଷିରେ ନିୟୋଜିତ ରହିଛନ୍ତି। ଅନ୍ୟପଟେ ଭାରତରେ ଜନସଂଖ୍ୟାର ୬୮.୬% ଗ୍ରାମାଂଚଳରେ ରହୁଥିବା ବେଳେ ୫୦%ରୁ ଅଧିକ ଭାରତୀୟ ଏବଂ ମୋଟ ଶ୍ରମଶକ୍ତିର ପ୍ରାୟ ୬୦% କୃଷିରେ ନିୟୋଜିତ ଅଛନ୍ତି। ଦେଶର ଜିଡ଼ିପିରେ କୃଷିକ୍ଷେତ୍ରର ଅବଦାନ ମାତ୍ର ୧୬% ଥିବା ବେଳେ କୃଷିରେ ଏତେ (ପ୍ରାୟ ୬୦%) ପରିମାଣରେ ଲୋକ ନିୟୋଜିତ ହେବା ଦେଶର କୃଷି ସଙ୍କଟର ମୂଳ କାରଣ ବୋଲି ଆମ ଦେଶର ଶାସକମାନଙ୍କୁ ବିଶ୍ୱବ୍ୟାଙ୍କ୍ ଓ ମୁଦ୍ରାପାଣ୍ଠି ପରି ଆର୍ନ୍ତଜାତୀୟ ସାମ୍ରାଜ୍ୟବାଦୀ ଆର୍ଥିକ ସଂସ୍ଥାମାନେ ବୁଝେଇ ଆସିଛନ୍ତି।

ଅତଏବ ଦେଶର କୃଷିରେ ରହିଥିବା ଏହି ବିପୁଳ ଶ୍ରମଶକ୍ତିକୁ ଉଚ୍ଛେଦ କରି ସେମାନଙ୍କ ସ୍ଥାନରେ କର୍ପୋରେଟ୍‌ମାନଙ୍କୁ ଆଣିବା ଲକ୍ଷ୍ୟରେ ହିଁ ଉପରୋକ୍ତ ତିନୋଟି କୃଷି ଆଇନକୁ ଅଣାଯାଇଛି। ଯଦି ଆଗାମୀ ଦିନରେ ଏତେ ପରିମାଣରେ ଲୋକ କୃଷିରୁ ବିତାଡ଼ିତ ହେବେ, ସେମାନେ ଯିବେ କୁଆଡ଼େ? ସେମାନଙ୍କୁ କୃଷିରୁ ବିତାଡ଼ିତ କରି ଏକ ସମ୍ମାନଜନକ ଏବଂ ସ୍ଥାୟୀ ରୋଜଗାରର କୌଣସି ବିକଳ୍ପ ବ୍ୟବସ୍ଥାର କଥା ତ ସରକାର ଚିନ୍ତା କରି ନାହାନ୍ତି। ଏଭଳି ଅବସ୍ଥାରେ ସେମାନେ ବାଧ ହୋଇ ସହରକୁ ପଳାୟନ କରି ସେଠାରେ ଥିବା ଶସ୍ତା ଶ୍ରମିକଙ୍କ ଧାଡ଼ିରେ ଯେ ନିଜକୁ ଯେ ସାମିଲ କରିବେ ସେଥିରେ ସନ୍ଦେହ ନାହିଁ। ଦେଶର କୋଟି କୋଟି କୃଷକ, କୃଷି ଶ୍ରମିକଙ୍କୁ କୃଷିରୁ ବିତାଡ଼ିତ କରି ଉତ୍କଟ ଦାରିଦ୍ର୍ୟ ଭିତରକୁ ଠେଲି ଦେଇ, ମୁଷ୍ଟିମେୟ କର୍ପୋରେଟ୍‌ଙ୍କ ମୁନାଫା ବଢ଼ାଇବାର ନୀତି ଝିଙ୍କିକା ମାରି ବଣି ପୋଷିବା ପରି ହୋଇଛି।

## ନୂତନ ବିଦ୍ୟୁତ୍ ସଂଶୋଧନ ବିଲ୍-୨୦୨୦

ବିଦ୍ୟୁତ୍ ହେଉଛି ଆମ ଦୈନନ୍ଦିନ ଜୀବନର ଏକ ଜରୁରୀ ଆବଶ୍ୟକତା। ଅତିତରେ ଖାଉଟିଙ୍କୁ ସୁଲଭ ମୂଲ୍ୟରେ, ନିରନ୍ତର ତଥା ଗୁଣାତ୍ମକ ବିଦ୍ୟୁତ ସେବା ଯୋଗାଇବାର ପ୍ରତିଶ୍ରୁତି ଦେଇ ସରକାର ବିଦ୍ୟୁତ୍ କ୍ଷେତ୍ରରେ ତଥାକଥିତ ସଂସ୍କାର କରିଥିଲେ। ବିଦ୍ୟୁତ୍ କ୍ଷେତ୍ରରେ ଘରୋଇ ପୁଞ୍ଜିନିବେଶ ଫଳରେ ଆଧୁନିକ ଜ୍ଞାନ କୌଶଳର ପ୍ରୟୋଗ ହେବ ଏବଂ ଜନ ସାଧାରଣ ଉଚ୍ଚମାନର ସେବା ପାଇବେ ବୋଲି କହି ଘରୋଇ କମ୍ପାନୀଙ୍କୁ ପୁଞ୍ଜିନିବେଶ ପାଇଁ ଅନୁମତି ଦିଆଯାଇଥିଲା। ଏହି ବଡ଼ କମ୍ପାନୀମାନେ ବିଦ୍ୟୁତ୍ କ୍ଷେତ୍ରର ଅପେକ୍ଷାକୃତ କ୍ଷତି ହେଉଥିବା ଉତ୍ପାଦନ ତଥା ପରିବହନରେ ନପଶି ମାଛର ମଝି ଗଡ଼ି ପରି କେବଳ ବଂଟନ ଦାୟୀତ୍ୱକୁ ହିଁ ହାତେଇନେବା ଦେଖାଯାଇଛି। ବିଦ୍ୟୁତ୍ କ୍ଷେତ୍ରରେ ଏହି ତଥାକଥିତ ସଂସ୍କାରର ୨୫ ବର୍ଷ ପରେ ବିଦ୍ୟୁତ୍ ସେବାରେ ତ କୌଣସି ଆଖିଦୃଶିଆ ଉନ୍ନତି ଦେଖାଯାଇନି ବରଂ ଆଜି ସାରା ଦେଶର ଅଶୀ ଭାଗ ବିଦ୍ୟୁତ୍ ବଂଟନ ଦାୟୀତ୍ୱଟି ଟାଟା, ରିଲାଏନ୍ସ ଓ ଆଦାନୀ ପରି ବଡ଼ ବଡ଼ କମ୍ପାନୀଙ୍କ ହାତକୁ ଚାଲିଯାଇଛି। ଏମାନେ ବାରମ୍ବାର ବିଦ୍ୟୁତ୍ ଭଡ଼ା ବୃଦ୍ଧି କରିବା ସହିତ ବିଭିନ୍ନ ଆଳରେ ଗ୍ରାହକଙ୍କ ଠାରୁ ମନଇଛା ଲୁଟିବାରେ ଲାଗିଛନ୍ତି।

ବିଦ୍ୟୁତ୍ କ୍ଷେତ୍ରର ସମ୍ପୂର୍ଣ୍ଣ ଘରୋଇକରଣ କରି କୃଷକ, ଛୋଟ ବ୍ୟବସାୟୀ ଏବଂ ସାଧାରଣ ଖାଉଟିମାନଙ୍କୁ ଲୁଣ୍ଠନ କରିବା ପାଇଁ ଆମ୍ବାନୀ, ଆଦାନୀ ଓ ଟାଟା ପରି ବଡ଼ ବଡ କମ୍ପାନୀମାନଙ୍କୁ ଅବାଧ ସୁଯୋଗ ଦେବା ଲକ୍ଷ୍ୟରେ ମୋଦି ସରକାର ବିଦ୍ୟୁତ୍ ସଂଶୋଧନ ବିଲ୍-୨୦୨୦ ଆଣିଛନ୍ତି। ପ୍ରସ୍ତାବିତ ବିଦ୍ୟୁତ୍ ସଂଶୋଧନ ବିଲ୍ ଜରିଆରେ ସରକାର ଦେଶର ବିଦ୍ୟୁତ୍ କ୍ଷେତ୍ରରୁ କର୍ପୋରେଟ୍‌ମାନେ କିପରି ଆହୁରି ଅଧିକ ମୁନାଫା କମାଇବେ ତାର ବାଟ ଖୋଲିବାକୁ ଚାହୁଁଛନ୍ତି। ଏଣିକି ଘରୋଇ କମ୍ପାନୀମାନଙ୍କ ନିର୍ଦ୍ଦେଶ ଏବଂ ଦାୟା ଉପରେ ଭାରତବର୍ଷର ବିଦ୍ୟୁତ୍ ଗ୍ରାହକମାନେ ପରିଚାଳିତ ହେବେ। ବିଦ୍ୟୁତ୍ ବିଲ୍ ଜରିଆରେ ସମସ୍ତ ବିଦ୍ୟୁତ୍ ଟିକସକୁ ଗ୍ରାହକମାନଙ୍କ ଠାରୁ ଆଗୁଆ ଆଦାୟ କରାଯିବ। ପୂର୍ବରୁ ବିଦ୍ୟୁତ୍‌ର ବ୍ୟବହାରର ପରିମାଣ ଭିତ୍ତିରେ ରହିଥିବା କ୍ରସ୍ ସବସିଡ଼ି ବା ସ୍ଲାବ୍ ବ୍ୟବସ୍ଥାର ଉଚ୍ଛେଦ କରାଯାଇ ବ୍ୟବହାରର ପରିମାଣ ନିର୍ବିଶେଷରେ ଗ୍ରାହକମାନଙ୍କ ଠାରୁ ପ୍ରତ୍ୟେକ ୟୁନିଟ୍ ପିଛା ସର୍ବାଧିକ ମୂଲ୍ୟରେ ଅର୍ଥ ଆଦାୟ କରାଯିବ। ଅର୍ଥାତ୍ ମାସିକ ୫୦ ୟୁନିଟ୍ ବ୍ୟବହାର କରୁଥିବା ଗରିବ ଲୋକଟି ୟୁନିଟ୍ ପିଛା ଯେତେ ଦେୟ ଦେବ ମାସକୁ ହଜାର ହଜାର ୟୁନିଟ୍ ବ୍ୟବହାର କରୁଥିବା ଶିଳ୍ପର ମାଲିକ ବି ନିଜର ପ୍ରତି ୟୁନିଟ୍ ବିଦ୍ୟୁତ୍ ବ୍ୟବହାର ପାଇଁ ସେତିକି ଦେୟ ପ୍ରଦାନ କରିବ। ବର୍ତ୍ତମାନ କୃଷି କ୍ଷେତ୍ର ଓ ଗରିବଙ୍କ ପାଇଁ ବିଦ୍ୟୁତ୍ ଦେୟରେ ଦିଆଯାଉଥିବା ସମସ୍ତ ପ୍ରକାର ରିହାତିକୁ ସମାପ୍ତ କରିବାକୁ ଏହି ପ୍ରସ୍ତାବିତ ବିଲ୍‌ରେ କୁହାଯାଇଛି। ଅତଏବ ଏହିଭଳି କୃଷକ ବିରୋଧୀ, ଗ୍ରାହକ ବିରୋଧୀ ବିଦ୍ୟୁତ୍ ବିଲ୍‌କୁ ତୁରନ୍ତ ପ୍ରତ୍ୟାହାର କରିବା ପାଇଁ କୃଷକ ଆନ୍ଦୋଳନ ଦୃଢ଼ ଭାବେ ଦାବୀ କରୁଛି।

## ଲଢ଼ୁଆ କୃଷକ ଆନ୍ଦୋଳନ ହିଁ କୃଷି ଓ କୃଷକଙ୍କୁ ବଞ୍ଚାଇବ

ସରକାର ତିନୋଟି ଆଇନକୁ ଦେଶର କୃଷି କ୍ଷେତ୍ରରେ ଗେମ୍ ଚେଞ୍ଜର ବୋଲି କହିବା ସହିତ ଏହାକୁ ନିଜର ଏକ ବହୁତ ବଡ଼ ଉପଲବ୍ଧି ବୋଲି ପ୍ରଚାର କରୁଛନ୍ତି। କିନ୍ତୁ ବାସ୍ତବତା ହେଲା, ଏହି ଆଇନ ଦେଶର କୋଟି କୋଟି କୃଷକଙ୍କୁ କୃଷିରୁ ବେଦଖଲ କରିବା ସହିତ ଭାରତର କୃଷିକୁ ଦେଶୀ ବିଦେଶୀ ବୃହତ୍ତ କର୍ପୋରେଟ୍‌ଙ୍କ ହାତରେ ସବୁଦିନ ପାଇଁ ଟେକିଦେବ। ଅତଏବ ଦେଶର କୃଷି, କୃଷକ ଏବଂ ଉପଭୋକ୍ତା ସମସ୍ତଙ୍କ ପାଇଁ ଏହି ତିନି ଆଇନ ମୃତ୍ୟୁଘଣ୍ଟି ହେବ। କୃଷି ସଂସ୍କାର ଓ କୃଷକଙ୍କୁ ସ୍ୱାଧୀନତା ଦେବା ନାଁରେ ମୋଦି ସରକାରଙ୍କ ଏଭଳି

ବିପଜ୍ଜନକ ପଦକ୍ଷେପ ପ୍ରକୃତରେ କୃଷକଙ୍କୁ ନୁହେଁ ବରଂ ଦେଶୀ ବିଦେଶୀ କମ୍ପାନୀମାନଙ୍କୁ ଲୁଟିବାର ସ୍ୱାଧୀନତା ଦେବାକୁ ଯାଉଛି। କୃଷକଙ୍କ ମୁକ୍ତି ନାଁରେ ସରକାର ଦେଶର କୋଟି କୋଟି କୃଷକଙ୍କୁ କୃଷିରୁ ହିଁ ସବୁଦିନ ପାଇଁ ମୁକ୍ତ କରିଦେବାର ରାସ୍ତା ଖୋଲିଛନ୍ତି। ଲକ୍‌ଡ଼ାଉନ୍‌ର ଆଢୁଆଳରେ ଅଣାଯାଇଥିବା ଉପରୋକ୍ତ ତିନୋଟି ଆଇନ, ଦେଶର କୃଷକ, କୃଷି ଶ୍ରମିକ ଏବଂ ସାଧାରଣ ଉପଭୋକ୍ତାଙ୍କ ତ୍ରିପଲ ମର୍ଡ଼ର ପରି ହୋଇଛି। ଅତଏବ ଦେଶର କୃଷିର ସାର୍ବଭୌମତା ସହିତ କୋଟି ଚାଷୀ, କୃଷି ଶ୍ରମିକଙ୍କ ଜୀବିକା ଏବଂ ସାଧାରଣ ଖାଉଟିଙ୍କ ସ୍ୱାର୍ଥ ଉପରେ ଆରମ୍ଭ ହୋଇଥିବା ସବୁଠାରୁ ବଡ଼ ଆକ୍ରମଣକୁ ପ୍ରତିରୋଧ ଓ ପ୍ରତିହତ କରିବା ଏକ ମହାନ ଦେଶପ୍ରେମୀ କର୍ତ୍ତବ୍ୟ।

ଆମ ଦେଶରେ କୃଷକ ଆନ୍ଦୋଳନର ଏକ ଲଢୁଆ ପରମ୍ପରା ରହିଛି। ସାମନ୍ତବାଦୀ ଓ ପୁଞ୍ଜିବାଦୀ ଶୋଷଣରୁ ମୁକ୍ତି ପାଇଁ ଭାରତର କୃଷକମାନେ ଅତିତରେ ଅନେକ ବୀରତ୍ୱପୂର୍ଣ୍ଣ ସଂଗ୍ରାମ କରିଛନ୍ତି। ସ୍ୱାଧୀନତା ପୂର୍ବର ବ୍ରିଟିଶ ଉପନିବେଶବାଦ ବିରୋଧରେ ଅଗଣିତ କୃଷକ ଆନ୍ଦୋଳନ, ଆଦିବାସୀ ବିଦ୍ରୋହ ହେଉ ଅଥବା ପରବର୍ତ୍ତି ପର୍ଯ୍ୟାୟରେ ତେଲେଙ୍ଗାନାର ସଶସ୍ତ୍ର ବିଦ୍ରୋହ ଠାରୁ ଆରମ୍ଭ କରି ତେଭାଗା, ନକ୍‌ସାଲବାଡ଼ିର କୃଷକ ଆନ୍ଦୋଳନ ହେଉ ସବୁଥିରେ କୃଷକମାନେ ଲକ୍ଷ ଲକ୍ଷ ସଂଖ୍ୟାରେ ଭାଗନେଇ ଶାସକ ଶ୍ରେଣୀର ଜନବିରୋଧୀ ନୀତି ଓ ଦମନର ପ୍ରତିରୋଧ କରିଛନ୍ତି। ଆଜି ମୋଦି ସରକାର ନେତୃତ୍ୱରେ ଦେଶରେ ଚାଲିଥିବା କର୍ପୋରେଟ୍ ରାଜ୍ ବିରୁଦ୍ଧରେ ଭାରତର କୃଷକମାନେ ପୁଣି ଥରେ ସେହି ପରମ୍ପରାକୁ ଆଗେଇ ନେଇ ସଂଗ୍ରାମର ଆଗଧାଡ଼ିରେ ଠିଆ ହୋଇଛନ୍ତି। ଦିଲ୍ଲୀର ଐତିହାସିକ କୃଷକ ଆନ୍ଦୋଳନ ସରକାରର ସାମ୍ରାଜ୍ୟବାଦ ସପକ୍ଷବାଦୀ ନୀତି ବିରୁଦ୍ଧରେ ଆଜି ଦେଶବାସୀଙ୍କୁ ଜାଗ୍ରତ କରିପାରିଛି। ଏହି ସଂଗ୍ରାମ କେବଳ କୃଷକଙ୍କର ହିଁ ନୁହେଁ, ସମଗ୍ର ଦେଶବାସୀଙ୍କ ସ୍ୱାର୍ଥରେ ଅଭିପ୍ରେତ। ଅତଏବ, ତିନୋଟି କୃଷକ ବିରୋଧୀ କଳା ଆଇନ ଏବଂ ବିଦ୍ୟୁତ୍ ବିଲ୍‌ର ସମ୍ପୂର୍ଣ୍ଣ ପ୍ରତ୍ୟାହାର ଦାବୀରେ ଆରମ୍ଭ ହୋଇଥିବା ଏହି ଐତିହାସିକ ଲଢ଼େଇକୁ ଆମେ ବିଜୟୀ କରିବାକୁ ହେବ। ଦେଶର କୃଷି, କୃଷକ ଏବଂ ଖାଦ୍ୟ ସୁରକ୍ଷାକୁ ବଞ୍ଚେଇବା ପାଇଁ କୃଷକ, କୃଷି ଶ୍ରମିକ, ଭାଗଚାଷୀ ଏବଂ ସାଧାରଣ ଜନତାକୁ ଏହି ଆନ୍ଦୋଳନରେ ସାମିଲ କରିବାକୁ ହେବ।

## ଜନ ଅଧିକାର ମଞ୍ଚ, ଓଡ଼ିଶାର ସଦସ୍ୟ ସଙ୍ଗଠନମାନେ :

୧- ଅଖିଳ ଭାରତ କିଶାନ ମଜଦୁର ସଭା,

୨- ଅଖିଳ ଭାରତ କ୍ରାନ୍ତିକାରୀ କୃଷକ ସଭା,

୩- ଅଖିଳ ଭାରତ କ୍ରାନ୍ତିକାରୀ ମହିଳା ସଙ୍ଗଠନ,

୪- ଆଦିବାସୀ ଭାରତ ମହାସଭା,

୫- ଉପକୂଳିୟ ଜମି ଓ ଜଙ୍ଗଲ ସୁରକ୍ଷା ସମିତି,

୬- ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଙ୍ଗଠନ,

୭- ଚାଷୀ ମୁଲିଆ ସଙ୍ଘ, ଓଡିଶା

୮- ଜନବାଦୀ ଲେଖକ ସଙ୍ଘ,

୯- ବନବାସୀ ସୁରକ୍ଷା ପରିଷଦ, କନ୍ଧମାଳ

୧୦- ବସ୍ତି ସୁରକ୍ଷା ମଞ୍ଚ,

୧୧ - ମାନବବାଦୀ ହେତୁବାଦୀ ସଙ୍ଗଠନ,

୧୨- ମାନବ ଅଧିକାର ସୁରକ୍ଷା ମଞ୍ଚ,

୧୩- ମିଥ୍ୟା ମକଦ୍ଦମା ବିରୋଧୀ ଅଭିଯାନ,

୧୪- ମାଲକାନଗିରି ଜିଲ୍ଲା ଆଦିବାସୀ ସଙ୍ଘ,

୧୫- ଇଣ୍ଡିଆନ ଫେଡେରେସନ ଅଫ ଟ୍ରେଡ ୟୁନିୟନ,

୧୬- ଟ୍ରେଡ ୟୁନିୟନ ସେଣ୍ଟର ଅଫ ଇଣ୍ଡିଆ

ଓ ଅନ୍ୟ ପ୍ରଗତିଶୀଳ ଗଣତାନ୍ତ୍ରିକ ବ୍ୟକ୍ତି ବିଶେଷ ।